ନୂତନ ସିଲବସ୍ ଅନୁଯାୟୀ ଲିଖିତ

# ନାଗରିକ ପାଠମାଳା

## ( ପ୍ରଥମ ଭାଗ )

( ଦ୍ୱିତୀୟ ଶ୍ରେଣୀ ନିମନ୍ତେ )

ଲେଖକ :—

**ଡକ୍ଟର ମାୟାଧର ମାନସିଂ,** ଏମ୍. ଏ.
ପି. ଏଚ୍. ଡ଼ି.

ସଂଶୋଧିତ ଓ ପରିମାର୍ଜିତ ସଂସ୍କରଣ

**୧୯୫୭**

**ପ୍ରକାଶକ—**

**ଓଡ଼ିଶା ପବ୍ଲିଶିଙ୍ଗ୍ ହାଉସ୍**

ବ୍ରହ୍ମପୁର : କଟକ : ସମ୍ବଲପୁର : ଜୟପୁର :

ମୂଲ୍ୟ—ଆଠ ଅଣା ବା ୫୦ ନୂଆ ପଇସା

# ସୂଚୀ

| ବିଷୟ | | ପୃଷ୍ଠା |
|---|---|---|

---

# ନାଗରିକ ପାଠମାଳା

## ପ୍ରଥମ ଭାଗ

### ମାଆ

ମୋ କଥା ବୁଝିବ କିଏ, ମୋ ମାଆ ପରି,
ଖୁଆଇବ କିଏ ଏତେ ଆଦର କରି ?
ବାଧିକା ପଡ଼ିଲେ ଶେଯ ପାଖରେ ବସି
କରୁଥାନ୍ତି ସେବା ମାଆ ଅଶ୍ରୁ ବରଷି,



ଦଥଁ ଦେବତାଙ୍କୁ କରି, ସଦା ପ୍ରାର୍ଥନା,
"ମୋ ପିଲା ନ ଭୋଗୁ ପ୍ରଭୁ ! କଷ୍ଟ ଯାତନା ।"
ବୁଲିଲେଁ ଯେବେ ଏଣେ ତେଣେ ହୋଇ ବେଳା,
ଖୋଜନ୍ତି ସେ କହି, "କାହିଁ ମୋ ପିଲା ଗଲା ?"

ଗୁହାଳକୁ ଗଲେ ପାଠ ପଢ଼ିବା ପାଇଁ,
ଦୁଆରେ ବସିଥିଲେ ମାଆ ମୋତେ ଅନାଇଁ ।
ଗୁହାଳରୁ ପାଠ ପଢ଼ି ଫେରିଲେ ଘରେ
ଦେହ ଝାଡ଼ିଦେବେ ମାଆ ଅତି ଆଦରେ;
ଜଳଖିଆ ବାଢ଼ିଦେବେ ଖାଇବା ପାଇଁ,
ପଚାରିବେ, 'କ ପଢ଼ିଲୁ କହିବୁ ନାହିଁ ?'
ମନ ତାଙ୍କ ମାନେ ନାହିଁ, ଯେତେ ମୁଁ ଖାଏଁ,
ନ ଗୁଣ୍ଡିବେ ମୋତେ ପେଟ ପୂରିବା ଯାଏଁ ।
ଖାଇ ଶୁଏ ଯେବେ ତାଙ୍କ ପାଖରେ ରାତିରେ,
ସ୍ନେହେ ମାଆ ହାତ ମାରି ପିଠେ, ମୁଣ୍ଡରେ
କହନ୍ତି, "ଧନରେ, ଭଲ ହେବୁଟି ତୁହି,
ତୋର ପରଶଂସା କାନେ ଶୁଣିବି ମୁହିଁ ।"
ମାଆ ହେବେ ବଡ଼ ଖୁସି, ହେଲେ ମୁଁ ଭଲ,
ନହେଲେ ମୋ ବଞ୍ଚିବାରେ ଆଉ କି ଫଳ ?

## ପ୍ରଶ୍ନ

୧ । ଗୁହାଳି, ଖୁସି, ପରଶଂସା—ଏ ଶବ୍ଦମାନଙ୍କର ଅର୍ଥ କହ ଏବଂ ଏଗୁଡ଼ିକୁ ଗୋଟିଏ ଗୋଟିଏ ବାକ୍ୟରେ ବ୍ୟବହାର କର ।

୨ । ତୁମେ ଗୁହାଳରୁ ଫେରିଲେ ତୁମ ପାଇଁ ବୋଉ କ'ଣ କରନ୍ତି ?

୩ । ତୁମେ ରାତିରେ ବୋଉ-କୋଳରେ ଶୋଇଲା ବେଳେ ସେ କ'ଣ କହନ୍ତି ?

# ଭଲ ପିଲା

ଗୋବିନ୍ଦ ଗୋଟିଏ ଭଲ ପିଲା । ତାର ବାପ, ମା, ସାହି-ପଡ଼ଶା ଓ ଶିକ୍ଷକ ସମସ୍ତେ ତାକୁ ଭଲ ପାଆନ୍ତି ।



ଗୋବିନ୍ଦ ସକାଳୁ ସୂର୍ଯ୍ୟ ଉଇଁବା ପୂର୍ବରୁ ଶେଯ ଛାଡ଼େ । ତା'ପରେ ମୁହଁ ଧୋଇ, ଦାନ୍ତ ଘଷି ଓ ଅନ୍ୟାନ୍ୟ କାମ ସାରି ସେ ଖୋଲା ପବନରେ ଟିକିଏ ବୁଲି ଆସେ । ତା'ପରେ ଜଳଖିଆ ଖାଇ ପଢ଼ିବସେ । ଶିକ୍ଷକ ଯେଉଁ ଯେଉଁ ବିଷୟରେ ଯାହା ପଢ଼ା ଦେଇଥାନ୍ତି, ସେ ସେହି ଦିନ ତାହା ଶେଷ କରିଦିଏ । ଆଜିର ପଢ଼ା ସେ କେବେହେଲେ କାଲିକି ପକାଇ ରଖେନାହିଁ । ପ୍ରାୟ ସାଢ଼େ ନଅଟା ବେଳକୁ ପଢ଼ା ଶେଷ କରି, ଗୋବିନ୍ଦ ଭାଇଭଉଣୀମାନଙ୍କ ସଙ୍ଗେ ସ୍ନାନ କରିସାରି ଖାଇ ବସେ । ତା' ପରେ ଟିକିଏ ବିଶ୍ରାମ କରି ଯାହା ବହିପତ୍ର ଦରକାର, ସେତକ ପତ୍ରରେ ଏକାଠି କରି ସ୍କୁଲକୁ ନେଇ ବାହାରେ ।

ସ୍କୁଲକୁ ଯିବାଆସିବାବେଳେ ଗୋବିନ୍ଦ କେବେହେଲେ କାହା ସଙ୍ଗେ କଳି କରେ ନାହିଁ । ସେ ଶ୍ରେଣୀରେ ଆଦୌ ଗପ କରେ ନାହିଁ । ଶିକ୍ଷକ ମହାଶୟ ଯାହା କହନ୍ତି, ତାହା ମନ ଦେଇ ଶୁଣେ । ଫଳରେ, ସେ ଶ୍ରେଣୀରେ ବରାବର ପ୍ରଥମ ହୁଏ ।

ଗୋବିନ୍ଦର ବାପା ସେପରି ଧନୀ ନୁହନ୍ତି; ତଥାପି ଗୋବିନ୍ଦ ତା' ବୋଉଙ୍କଠାରୁ କେବେ ପଇସାଏ ଅଧଲାଏ ପାଇଲେ, ତା' ଶ୍ରେଣୀର ଗରିବ ପିଲାଙ୍କୁ ଦେଇ ସାହାଯ୍ୟ କରେ ।

ଖାଇବା ବିଷୟରେ ଗୋବିନ୍ଦ ବୋଉଙ୍କ ପାଖେ କେବେ-ହେଲେ ଅଳି କରେ ନାହିଁ; ବୋଉ ଯାହା ଦିଅନ୍ତି, ତାହା ସନ୍ତୁଷ୍ଟ ହୋଇ ଖାଏ । ପୁଣି ସେ ଯାହା ଖାଏ, ତାହା ଠିକ୍ ସମୟରେ ଖାଏ । ସକାଳେ ସାତେ ଛଅଟାରେ ସାମାନ୍ୟ ଜଳଖିଆ ଓ ଦଶଟା ବେଳେ ଭାତ, ପୁଣି ସାତେ ଗୁରଟାରେ ଜଳଖିଆ ଓ ରାତି ନଅଟାରେ ଭାତ, ଏହି ନିୟମରେ ସେ ଭୋଜନ କରେ । ଅନ୍ୟ ପିଲାଏ ଯେତେ-ବେଳେ ଯାହା ମିଳିଲା, ତାହା ଖାଇ ଯାଆନ୍ତି, କିନ୍ତୁ ଗୋବିନ୍ଦ ତା'ର ଖାଇବା ସମୟ ବ୍ୟତୀତ ଅନ୍ୟ ସମୟରେ କିଛି ଖାଏ ନାହିଁ ।

ଗୋବିନ୍ଦ ସବୁବେଳେ ଠିକ୍ ସମୟରେ କାମ କରୁଥିବା ହେତୁ ଅନ୍ୟ କାମ କରିବା ପାଇଁ ତାକୁ ବହୁତ ସମୟ ମିଳେ । ସେ ନାନାପ୍ରକାର ଖେଳର ନିୟମ, ପୁରାଣ, ଇତିହାସ ପ୍ରଭୃତି ପଢ଼େ । ଘରର ସଉଦା କିଣି ଆଣେ ଏବଂ ବାପା ମାଆଙ୍କ ବୋଲ କରେ । ପରର ଦୁଃଖ ଦେଖିଲେ ସେ କାନ୍ଦିପକାଏ । ଭୋକା, ଶୋଷୀ ଯଦି କେବେ ତା' ହାବୁଡ଼େ ପଡ଼ନ୍ତି, ସେ ତାଙ୍କୁ କିଛି ନ ଦେଇ ରହିପାରେ ନାହିଁ ।

ଗୋବିନ୍ଦର ଏହିସବୁ ଗୁଣ ଯୋଗୁଁ ତାକୁ ସମସ୍ତେ ଆଦର କରନ୍ତି । ସବୁ ପିଲାଏ ଗୋବିନ୍ଦ ପରି ହେବା ଉଚିତ ।

## ପ୍ରଶ୍ନ

୧ । ଗୋବିନ୍ଦକୁ ପାଠଶାଳାରେ ଲୋକେ ଭଲ ପାଆନ୍ତି କାହିଁକି ?

୨ । କି କି ଗୁଣ ଥିବାରୁ ଗୋବିନ୍ଦ ଶ୍ରେଣୀରେ ପ୍ରଥମ ହୁଏ ।

୩ । ପାଠପଢ଼ା ଛଡ଼ା ଗୋବିନ୍ଦ ଘରର କି କି କାମ କରେ ଏବଂ ସେ ସେହି କାର୍ଯ୍ୟ କରିବାକୁ ସମୟ ପାଏ କିପରି ?

୪ । ଗୋବିନ୍ଦ ସେତେ ଧନୀ ପିଲା ନୁହେଁ, ସେ ତା' ବୋଉଠାରୁ ପଇସା ଆଣି ନିଜେ ଖର୍ଚ୍ଚ ନକରି ଗରିବ ପିଲାଙ୍କୁ ଦିଏ କାହିଁକି ?

୫ । ସ୍ନାନ, ବିଶ୍ରାମ, ଅତି, ସନ୍ତୁଷ୍ଟ, ପୁରାଣ—ଏଗୁଡ଼ିକର ଅର୍ଥ କହ ।

---

## ରୋଗିସେବା

ଥରେ ମହାତ୍ମା ଗାନ୍ଧି ସମ୍ବଲପୁର ଆସିଥିଲେ । ସେତେବେଳେ କୁଷ୍ଠରୋଗର ଉତ୍ତମ ଚିକିତ୍ସକ ଶ୍ରୀଯୁକ୍ତ ଡାକ୍ତର ଆଇଜାକ୍ ସାନ୍ତ୍ରା ସେଠାରେ ଥା'ନ୍ତି । ସେ ମହାତ୍ମା ଗାନ୍ଧିଙ୍କୁ ତାଙ୍କର କୁଷ୍ଠାଶ୍ରମକୁ ଡାକି ନେଇଥିଲେ । ଗାନ୍ଧିଜୀଙ୍କୁ ଛୁଇଁଲେ ରୋଗ ଭଲ ହୋଇଯିବ ଭାବି ସେଠାରେ ଥିବା କୁଷ୍ଠରୋଗୀମାନେ ତାଙ୍କୁ ଛୁଇଁବାକୁ ଆସିଲେ । ବାପୁଜୀ ହସି ହସି ହାତ ବଢ଼ାଇଦେଲେ । ରୋଗୀମାନେ ନିଜ ନିଜର ଘା-ଘଉଜିଆ ହାତରେ ବାପୁଜୀଙ୍କ ହାତକୁ ଧରିଲେ । ବାପୁଜୀ

କୌଣସି ପ୍ରକାର ଘୃଣାର ଚିହ୍ନ ନ ଦେଖାଇ, କେବଳ ହସୁଥା'ନ୍ତି ।

କୁଷ୍ଠରୋଗ ଏକ ଭୟାନକ ଡଆଁରୋଗ । ଘଷାଘଷି ହେବାଦ୍ୱାରା ଏହା ଜଣକଠାରୁ ଅନ୍ୟ ଜଣକୁ ଡେଇଁପଡ଼େ । ସେଥିପାଇଁ କୁଷ୍ଠରୋଗ ନ ବଢ଼ିବା ସକାଶେ କୁଷ୍ଠରୋଗୀକୁ ଅନ୍ୟ ଲୋକମାନଙ୍କ ସହିତ ମିଶିବାକୁ ବାରଣ କରିବା ଉଚିତ । ରୋଗୀମାନେ ବାପୁଜୀଙ୍କୁ ଜାଣି ଜାଣି ଛୁଇଁବାରୁ ଡାକ୍ତର ଆଇଜାକ୍ ସାନ୍ତା ଗୋଟିଏ ପାତ୍ରରେ ବିଶୋଧକ ପାଣି ଆଣି ତାଙ୍କୁ କହିଲେ, "ଆପଣ ବର୍ତ୍ତମାନ ନିଜ ହାତଟି ଧୋଇ ନିଅନ୍ତୁ ।" କିନ୍ତୁ ବାପୁଜୀ ଚୁପ୍ କରି ଡାକ୍ତର ସାନ୍ତାଙ୍କ କାନରେ କହିଦେଲେ, "ନା, ସେପରି କଲେ ଏଠି ଥିବା ରୋଗୀମାନଙ୍କ ମନରେ କଷ୍ଟ ହେବ । ମୁଁ ଘରେ ମୋ ହାତ ଧୋଇ ନେବି ।"

ରୋଗିସେବା କିପରି କରିବାକୁ ହେବ, ତା'ର ଏକ ମହା ଶିକ୍ଷା ଏହି ଘଟଣାରୁ ମିଳୁଛି । ଆମ୍ଭେମାନେ ପ୍ରତ୍ୟେକେ ବେଳେ ବେଳେ ରୋଗରେ ପଡ଼ୁ । ଜ୍ୱର, ଝାଡ଼ା, ମୁଣ୍ଡବିନ୍ଧା ପ୍ରଭୃତି କୌଣସି ନା କୌଣସି ରୋଗ ପ୍ରତ୍ୟେକଙ୍କର କେବେ କେବେ ହୋଇଥାଏ । ସେତେବେଳେ ଆମେ ଚାହୁଁ ଯେ ମା, ବାପା ବା ଆଉ କିଏ ପାଖରେ ବସି ଟିକିଏ ଦେହ ଆଉଁସି ଦିଅନ୍ତେ, କି ପାଣି ଟିକିଏ ପିଇବାକୁ ଦିଅନ୍ତେ, କି ମୁଣ୍ଡଟା ଚିପି ଧରନ୍ତେ । ଆମେ ଯିମିତି ଚାହୁଁ, ଅନ୍ୟମାନେ ମଧ୍ୟ ରୋଗ ଭୋଗ କଲାବେଳେ ସେହିପରି ଚାହାନ୍ତି । ତେଣୁ ପ୍ରତ୍ୟେକ ରୋଗୀକୁ ସ୍ନେହପୂର୍ଣ୍ଣ ବ୍ୟବହାର ଦେଖାଇବା ଓ ମନ ଦେଇ ତା'ର ସେବା କରିବା ଉଚିତ । କୌଣସି ରୋଗୀକୁ

ଘୃଣା କରିବା, କି ତା' ଉପରେ ବିରକ୍ତ ହେବା ଉଚିତ ନୁହେଁ ।
ବାପୁଜୀ ରୋଗିସେବା କରିବାକୁ ଭାରି ଭଲପାଉଥିଲେ ଏବଂ ମନ



ଦେଇ ତାହା କରୁଥିଲେ । କିପରି ଉତ୍ତମରୂପେ ରୋଗିସେବା
କରିବାକୁ ହେବ, ତାହା ପ୍ରଥମେ ଆମର ଜାଣି ରଖିବା ଦରକାର ।

## ପ୍ରଶ୍ନ

୧ । ଏହି ଗଳ୍ପଟି ପଢ଼ି ତୁମେ କି ଶିକ୍ଷା ପାଇଲ ?

୨ । ରୋଗୀ ପ୍ରତି ତୁମର କିପରି ବ୍ୟବହାର କରିବା ଉଚିତ ?

୩ । ଅର୍ଥ କହ—ମହାତ୍ମା, ଧା ଧଉଡ଼, ଘୃଣା, ସ୍ନେହ ।

---

# ଭଦ୍ର ବ୍ୟବହାର

ଶିକ୍ଷକ—ରାମ, ତମେ ଆଜ ସକାଳେ ବାପା ଓ ମା'ଙ୍କୁ ନମସ୍କାର କରିଛ ?

ରାମ—ନାହିଁ ମହାଶୟ, ମୁଁ ଭୁଲିଗଲି ।

ଶିକ୍ଷକ—ସେ କଥା କଦାପି ଭୁଲିବ ନାହିଁ । ତମେ ମତେ ପ୍ରତ୍ୟହ ନମସ୍କାର କରୁଛ; କାରଣ ମୁଁ ତମର ଗୁରୁ । କିନ୍ତୁ ପିତା ଓ ମାତା ଗୁରୁଠାରୁ ବଡ଼ । ତାଙ୍କୁ ମଧ୍ୟ ତମେ ପ୍ରତିଦିନ ନମସ୍କାର କରିବ । ତାଙ୍କ ମନରେ ଆଘାତ ଦେବ ନାହିଁ । ତାଙ୍କ କଥା ସର୍ବଦା ମାନି ଚଳିବ ।

ରାମ—ଆଜ୍ଞା, ମୁଁ ଏଥର ଏହା ନିଶ୍ଚୟ ପାଳନ କରିବି ।

ଶିକ୍ଷକ—କେବଳ ପିତାମାତାଙ୍କୁ ନୁହେଁ, ସାହିରେ, ଗାଁରେ ବା ପଡ଼ାରେ ବୟସ୍କ ଲୋକ ଯେ କେହି ଥିବେ, ତାଙ୍କୁ ମଧ୍ୟ ନମସ୍କାର କରିବ । ଏହାକୁହିଁ ଭଦ୍ର ବ୍ୟବହାର କହନ୍ତି । ପ୍ରତ୍ୟେକ ପିଲାର ଭଦ୍ର ବ୍ୟବହାର ଶିଖିବା ଉଚିତ । ଭଦ୍ର ବ୍ୟବହାର ବିଷୟରେ ଆଉ ସବୁ ଯାହା କହିଛି, ସେ ସବୁ ଆଗରୁ ମନେ ରଖିଛ ନା ?

ରାମ—ଆଜ୍ଞା, ମନେ ଅଛି ।

ଶିକ୍ଷକ—କହିଲ ।

ରାମ—କାହାକୁ 'ତୁ' କହିବ ନାହିଁ । ସାଙ୍ଗମାନଙ୍କୁ 'ତମେ' ଓ ବଡ଼ମାନଙ୍କୁ 'ଆପଣ' କହିବ । କାହାଠାରୁ କୌଣସି ଜିନିଷ ଛଡ଼ାଇ ନେବ ନାହିଁ, କି ନ କହି ନେବ ନାହିଁ । ତାହାଙ୍କୁ କହିବ, ମୁଁ ଅମୁକ ବହି ବା ଜିନିଷଟା ନେଇ-

ପାରେ କି ?’ ସେ ଯଦି ‘ହଁ’ କହିବେ, ତେବେ ନେବ ।
କାହାଠାରୁ କୌଣସି ଜିନଷ ପାଇଲେ ତାଙ୍କୁ ‘ଧନ୍ୟବାଦ’
ଦେବ । ବୁଢ଼ାବୁଢ଼ୀ ଓ ରୋଗୀମାନଙ୍କର ସେବା କରିବ ।
ବାପା ଓ ବୋଉ ଯେଉଁ କାମ କରିବାକୁ କହିବେ, ତାହା
ଯତ୍ନର ସହିତ ମନ ଦେଇ କରିବ ।

ଶିକ୍ଷକ—ଭଦ୍ର-ବ୍ୟବହାରର ନୀତିଗୁଡ଼ିକ ମନେ ରଖିଛ, ଜାଣି ମୁଁ
ଭାରି ଖୁସିହେଲି । ଆଶା କରେଁ, ତମେ ତାହା ବରାବର
ପାଳନ କରିବ ।

## ପ୍ରଶ୍ନ

୧ । ଶିକ୍ଷକ ରାମକୁ କି ଉପଦେଶ ଦେଲେ ?
୨ । ବୟସ୍କ ଲୋକମାନଙ୍କୁ କିପରି ବ୍ୟବହାର କରିବ ?
୩ । ଏ ବିଷୟରୁ କି କି ଭଦ୍ର-ବ୍ୟବହାର କରିବାକୁ ଶିଖିଲ ?
୪ । ନମସ୍କାର, ବୟସ୍କ, ଭଦ୍ରନୀତି, ପାଳନ—ଏଗୁଡ଼ିକର ଅର୍ଥ
ଲେଖ ଏବଂ ଏଗୁଡ଼ିକୁ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼ ।

---

## ଇଟା

ଆମ ଦେଶରେ ସାଧାରଣତଃ ଲୋକେ ମାଟିରେ ଘର
ତିଆରି କରିଥାନ୍ତି । ଗ୍ରାମମାନଙ୍କରେ ଲୋକେ ନିଜ ଜମିରୁ ମାଟି
ଖୋଳି ଆଣି ସେଥିରେ ପାଣି ପକାଇ ଚକଟି କାଦୁଅ କରନ୍ତି ।
ତାହାକୁ ଦରକାର ମୁତାବକ ଦୈର୍ଘ୍ୟ ପ୍ରସ୍ଥ କରି ଦୁଆକୁ ଦୁଆ ଲଦନ୍ତି ।

ଏହା କ୍ରମେ ଶୁଖିଗଲେ ଟାଣ ହୋଇ ଘରର କାନ୍ଥ ହୁଏ । କାନ୍ଥ ଉପରେ କାଠ ଓ ବାଉଁଶରେ ଚାଳ ତିଆରି କରି ନଡ଼ାରେ ଛାଉଣି କରିଦେଲେ ସୁନ୍ଦର ଘର ହୁଏ ।

କିନ୍ତୁ ଆଉ କେତେକ ଲୋକ ମାଟିରୁ ଇଟା କରି, ସେଇ ଇଟାରେ କାନ୍ଥ କରି ଘର ତିଆରି କରନ୍ତି । ଇଟା ତିଆରି ଘର, ମାଟିଘର ଅପେକ୍ଷା ବହୁତ ମଜବୁତ ହୁଏ । ଏଥିରେ ଉଇ ଓ ମୂଷାଙ୍କ ଅତ୍ୟାଚାରରୁ ରକ୍ଷା ମିଳେ; ପାଣିପବନ ସହଜରେ ଇଟା ତିଆରି ଘରର ଅନିଷ୍ଟ କରିପାରେ ନାହିଁ ।

ଇଟା ତିଆରି ପାଇଁ ମାଟି ଖୋଳି ତାକୁ ଚକଟି କାଦୁଅ କରିବାକୁ ହୁଏ । ତା'ପରେ ସେଥିରୁ ଗୋଡ଼, ପଥର ସବୁ ବାହାର କରି ଚିକ୍କଣ କରାଯାଏ ଓ ଛାଞ୍ଚରେ ପକାଇ ଚାରିକୋଣିଆ ଇଟା ସବୁ ଗଢ଼ାଯାଏ । ଏ ଅବସ୍ଥାରେ ଇଟା କଞ୍ଚା ଥାଏ ଓ ତାହା କେବଳ ମେଞ୍ଚାଏ କାଦୁଅ କହିଲେ ଚଳେ । ତା' ପରେ ଏହି କଞ୍ଚା ଇଟାଗୁଡ଼ିକୁ ଖୋଲା ଜାଗାରେ ମେଲାଇ ପକାଇ ଦେଲେ ଟାଣ ଖରାରେ ସେସବୁ ଶୁଖି କ୍ରମେ ଶକ୍ତ ହୋଇଯାଏ । ଅନେକ ଲୋକ ଏଇ ଖରା-ଶୁଖା ଇଟାରେ ମଧ୍ୟ ଘର କରିଥାନ୍ତି । କିନ୍ତୁ ଖରା-ଶୁଖା ଇଟାକୁ ନିଆଁରେ ପୋଡ଼ିଲେ ପ୍ରକୃତରେ ମଜବୁତ୍ ଇଟା ମିଳେ । ସାଧାରଣତଃ ଏହି ପ୍ରକାର ଇଟାକୁହିଁ ଆମେ ନାନା କାମରେ ଲଗାଇଥାଉଁ ।

ଇଟା ଯେଉଁଠି ପୋଡ଼ାହୁଏ, ତାକୁ ଭାଟି କହନ୍ତି । ଭାଟିରେ ଖରା-ଶୁଖା ଇଟା ସବୁକୁ ଥାକ ଥାକ କରି ଏକାଠି ଗଦା କରି ଦିଆଯାଏ । ଏହାର ତଳେ ନିଆଁ ଜାଳିବା ପାଇଁ ଚାରିପଟେ ଦୁଇ

ଝରକୋଟି କରି ଫାଙ୍କ ଥାଏ । ବହୁତ କାଠ ସେଇ ଫାଙ୍କବାଟେ ପୂରାଇ ନିଆଁ ଲଗାଇ ଦେବାକୁ ପଡ଼େ । ନିଆଁ ଦିନ ରାତି ଜଳେ । ସେଇ ନିଆଁର ତାତରେ ଗଦାମରା ଯାଇଥିବା ହଜାର ହଜାର ଇଟା ପୋଡ଼ି ନାଲି ହୋଇଯାଏ । ଇଟା ପୋଡ଼ି ଦେବାକୁ ବହୁତ ଘାଅଦିନ ନିଆଁ ଦରକାର କରେ ।



ଇଟା ଭାଟି

କେବଳ ଇଟା ଉପରେ ଇଟା ଥୋଇଦେଲେ ଘରର କାନ୍ଥ ହୋଇପିବ ନାହିଁ । ଇଟାକୁ ଇଟାରେ ଯୋଡ଼ିବା ପାଇଁ ସୁରକି ଦରକାର । ଚୂନ ଓ ବାଲି ମିଶାଇ ସୁରକି ତିଆରି ହୁଏ । ଏହାକୁ ଇଟାର ଅଠା କୁହାଯାଇ ପାରେ । ସୁରକି ଦେଇ ଇଟାକୁ ଇଟା ଲଗାଇ ଦେଲେ ଖରା, ବର୍ଷା ଖାଇ ତାହା ପଥର ପରି ଶକ୍ତ ହୋଇଯାଏ ।

ମାଟିଘର ଅପେକ୍ଷା ଇଟା-ଘର ତିଆରି କରିବାରେ ଖର୍ଚ୍ଚ ବେଶି; କିନ୍ତୁ ଆମେ ନିଜେ ନିଜେ ଇଟା ତିଆରି କରିପାରିଲେ ଖର୍ଚ୍ଚ ବହୁତ କମିଯିବ । ଇଟା ତିଆରି ଖୁବ୍ ସହଜ କାମ । ଇଟା ତ ମାଟିରୁ ହେଉଛି । ପୁଣି ମାଟି ସବୁଠି ମିଳୁଛି । ତେଣୁ ଇଟାରେ ଘର ନ କରି ମାଟିରେ କରିବ କାହିଁକି ? ଆମ ଗ୍ରାମମାନଙ୍କରେ ପ୍ରତ୍ୟେକ କୃଷକ ଯଦି ଇଟା ତିଆରି ଜାଣିଥାନ୍ତେ, ସେମାନେ ନିଜ ନିଜ ଘର ମାଟିରେ ନ କରି ଇଟାରେ କରନ୍ତେ । ଇଟାଘର ଦେଖିବାକୁ ସୁନ୍ଦର ଓ ମଜବୁତ୍ ହୁଏ । ଆମ ଦେଶର ପ୍ରତ୍ୟେକ ପିଲା ଇଟା ତିଆରି କରି ଜାଣିବା ଉଚିତ । ସାହେବମାନଙ୍କ ରାଜ୍ୟର ଜଣେ ପ୍ରଧାନମନ୍ତ୍ରୀ ଫୁରସତ୍ ପାଇଲେ ନିଜ ବଗିଚାରେ ନିଜ ହାତରେ ଇଟା ତିଆରି କରନ୍ତି ।

## ପ୍ରଶ୍ନ

୧ । ମାଟି କାହୁଁ କପରି ହୁଏ ?

୨ । ଇଟାଘର ମାଟିଘରଠାରୁ ଭଲ କାହିଁକି ?

୩ । ମାଟିରୁ କପରି ଇଟା ତିଆରି କରାଯାଏ ?

୪ । ଶୂନ୍ୟସ୍ଥାନ ପୂରଣ କର :— ଇଟାକୁ ଇଟାରେ—ପାଇଁ—ଦରକାର—ଓ—ମିଶାଇ—ତିଆରି ହୁଏ ।

---

## ଆମ ଦେଶ

ଯେତେ ଦେଶ ଅଛି ଜଗତେ
　　　　ସବୁ ଦେଶରୁ ସାର
ଆମ ଦେଶ, ସାରା ଜଗତେ
　　　　ଶୁଭେ ଖ୍ୟାତି ତାହାର ।

ବୁଦ୍ଧ ଗାନ୍ଧି ଆଦି ମହାତ୍ମା—
ଗଲେଣି ଦେଇଁ ଜନମ
ସବୁ ଲୋକେ ଆସି ପୂଜନ୍ତି
ଆମ ମାତା ଚରଣ ।




କେତେ କବି, ଜ୍ଞାନୀ ଜନ୍ମିଲେ
ଆମ ଏହି ମାଟିରେ ।
ନାଁ ରଖିଗଲେ ମାଆର
ସୁବିଶାଳ ପୃଥ୍ୱୀରେ ।

ପୃଥିବୀର ଧର୍ମ-ସଭାରେ
ସ୍ୱାମୀ ବିବେକାନନ୍ଦ
ଆମ ଧର୍ମ ବ୍ୟାଖ୍ୟା ଶୁଣାଇ
କଲେ ବିଶ୍ୱ ସ୍ତବ୍ଧ ।

ଗାନ୍ଧି ବିନା ରକ୍ତପାତରେ
ଯୁଦ୍ଧ ଜିଣିଲେ ପରା,
ଅଦ୍ଭୁତ ଏ କଥା କେବେ ହେଁ
ଶୁଣି ନ ଥିଲା ଧରା ।

ସବୁ ଦେଶୁ ଲୋକେ ଆସନ୍ତି
ଏଠି ପାଇବେ ଜ୍ଞାନ,
ତପସ୍ୱୀଙ୍କ ଭୂମି ବୋଲି ଏ
ପାଏ ସଦା ସମ୍ମାନ ।

ଆମଦେଶ ଏବେ ସ୍ୱାଧୀନ,
ଧରଣୀର ଗୌରବ,
ହାଣକାଠ ରୋଧି ବିଶ୍ୱରେ
ହୁଏ ଶାନ୍ତିରକ୍ଷକ ।

ହିମାଳୟ ତା'ର ମୁକୁଟ
ସିନ୍ଧୁ ଧୁଏ ଚରଣ,
ଶ୍ୟାମ ଶସ୍ୟକ୍ଷେତ୍ର, କାନନ;
ତାର ରମ୍ୟ ବସନ ।

ପ୍ରତି ପୁଅ ଏହି ମାଆର
ବୀର ହେବାକୁ ଗ୍ଭହେଁ,
ପ୍ରତି କନ୍ୟା ସତୀ-ଗୌରବ
ପାଇଁ କଳପୁ ଥାଏ ।
ସେଥିପାଇଁ ଚଗ୍ ମିବାର-
ଗଢ଼େ ପ୍ରତିଟି ଜନ
ରଣେ ମଲେ, ନାରୀ ବରିଲେ
ସୁଖେ ଅଗ୍ନି-ଦହନ ।
ଆମ ଦେଶ ଆଜି ସ୍ୱାଧୀନ
ଆମେ କରିବା ପଣ,
ମାନ ପାଇଁ ଜନ୍ମଭୂମିର
ଦେବା ଏଇ ଜୀବନ ।
ପ୍ରତି ପୁଅ ବୀର ହୋଇବା,
ପ୍ରତି କନ୍ୟା ପଦ୍ମିନୀ
ଆମେ ଥାଉଁ ଆମ ମାଆ କି
ଆଉ ହେବ ବନ୍ଦିନୀ ?
ଆମେ ଥାଉଁ ଆମ ମାଆ କି
ହେବ ଦୁଃଖିନୀ ଆଉ ?
ତା ମାନ, ସମ୍ପଦ ବଢ଼ାଇ
ଯାଉ ଆମର ଆୟୁ ।

## ପ୍ରଶ୍ନ

୧ । କି କି କାରଣ ଯୋଗୁଁ ଆମଦେଶ ପୃଥିବୀରେ ଶ୍ରେଷ୍ଠତା ଲାଭ କରିଛି ?

୨ । ବୁଝାଇ ଲେଖ :—"ଆମେ ଥାଉଁ ଆମ ମାଆ କ······ଆମର ଆୟୁ ।"

୩ । ଅର୍ଥ ଲେଖି ବାକ୍ୟରେ ବ୍ୟବହାର କର :—
ଖ୍ୟାତି, ଜ୍ଞାନ, ପ୍ରବନ୍ଧ, ତପସ୍ୱୀ, ଗୌରବ, ସମ୍ପଦ ।

୪ । ବିପରୀତ ଶବ୍ଦ କହ :—**ସମ୍ପଦ,** ଦୁଃଖୀ, ସ୍ୱାଧୀନ, ଧର୍ମ୍ମ ।

---

## ପଙ୍କଜ ବ୍ୟାଧ

ଢେଙ୍କାନାଳରେ ଶଙ୍କରପୁର ବୋଲି ଗୋଟିଏ ଗାଁ ଅଛି । ପଙ୍କଜ ନାମରେ ସେଠାରେ ଏକ ବାଣୁଆ ରହେ । ପିଲାଦିନେ ସେ ଧନୁଶର ଧରି ବଣକୁ ଯାଉଥିଲା ଓ ପକ୍ଷୀ, ମିରିଗ ମାରି ଲୋକଙ୍କୁ ବିକି ପେଟ ପୋଷୁଥିଲା । ଏବେ ପଙ୍କଜ ଧନୁଶର ଛାଡ଼ି ଗୋଟିଏ ବନ୍ଧୁକ ଧରି ଶିକାର କରିବାକୁ ଯାଏ ।

ଦିନେ ପଙ୍କଜ ବଣରେ ଗୋଟିଏ କପୋତ-ପକ୍ଷୀ ମାରିଲା । ପକ୍ଷୀଟି ଛଟପଟ ହୋଇ ଗଛଡାଳରୁ ତଳେ ପଡ଼ି ମରିଗଲା । ପଙ୍କଜ ତାକୁ ଗୋଟାଇ ଆଣି ଘରକୁ ଫେରିଲା । କିନ୍ତୁ ସେ ଦେଖିଲା ଯେ, ମଲା ପକ୍ଷୀର ସାଙ୍ଗଟିଏ ବିକଳ ହୋଇ ତା'ପଛେ

ପଛେ ଉଡ଼ି ଆସୁଅଛି । ସେ ଯେତେ ଆଗେଇଥାଏ, ପକ୍ଷୀଟି ସେତେ ଗୋଡ଼ାଇଥାଏ ଓ ତା'ର ମୁଣ୍ଡ ଉପରେ ଚକ୍‌କାଟି ବୁଲୁଥାଏ । ପକ୍ଷୀଟିକୁ ମାରିଦେଇ ଥିବାରୁ ପଙ୍କଜର ମନ ବଡ଼ ଦୁଃଖିତ ହେଲା । ସେ ମଲା ପକ୍ଷୀଟିକୁ ତଳେ ପକାଇ ଦେଇ ଚାଲି ଆସିଲା । ସାଙ୍ଗ ପକ୍ଷୀ ଡେଣା ମେଲାଇ ମଲା ପକ୍ଷୀ ଉପରେ ବସି କାନ୍ଦିବାକୁ ଲାଗିଲା ।



ସେଦିନ ପଙ୍କଜ ଘରକୁ ଫେରି ଠିକ୍ କଲା ଯେ, ଯେଉଁ ସବୁ ଜୀବଜନ୍ତୁ କାହାର କିଛି ଅନିଷ୍ଟ କରନ୍ତି ନାହିଁ ଓ ନିଜ ସୁଖରେ ଥାଆନ୍ତି, ସେ ଆଉ ସେମାନଙ୍କୁ ମାରିବ ନାହିଁ ।

ଏବେ ପଙ୍କଜ କେବଳ ବାଘ, ଗଧିଆ ଆଦି ଦୁଷ୍ଟ ଜନ୍ତୁଙ୍କୁ ଶିକାର କରେ ।

## ପ୍ରଶ୍ନ

୧ । କପୋତ ପକ୍ଷୀଟି ମରିଯିବାରୁ ତାର ସାଙ୍ଗ ପକ୍ଷୀ କଅଣ କଲା ?

୨ । ପଙ୍କଜ ଘରକୁ ଫେରିଆସି କଅଣ ଭାବିଲା ?

୩ । ଶର, ପକ୍ଷୀ, ଦୂର, ଦୁଃଖିତ, ଜୀବଜନ୍ତୁ ଅନିଷ୍ଟ—ଏଗୁଡ଼ିକୁ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼ ।

୪ । ବାକ୍ୟ କରି ଲେଖ :—ଯାଉଥିଲା, ଧରି, ପିଲାମାନେ, ଧନୁଶର, ସେ ଆଣି, ଫେରିଲା, ଗୋଟାଏ, ତାକୁ, ପଙ୍କଜ, ଘରକୁ ।

---

## ପୁରୁଣା କାଳର କଥା

ଗୋଟିଏ ବଣ ଭିତରେ ଝରଣାଟିଏ ବହି ଯାଉଥିଲା । ସେହି ଝରଣାରୁ ଜଣେ ଲୋକ ପାଣି ପିଉ ପିଉ ପାଣି କୂଳରୁ ଏକପ୍ରକାର ଶସ୍ୟର ଦାନାଟିଏ ପାଇଲା । ତାହା ସେ ହାତରେ ଧରି କ'ଣ ବୋଲି ଦେଖିଲା; ମାତ୍ର ଚିହ୍ନି ପାରିଲା ନାହିଁ । ସେ ତାହା ନେଇ ତାଙ୍କ ମୁଲକର ରାଜାଙ୍କୁ ଦେଲା । ରାଜା ସେହି ଦାନାକୁ ତାଙ୍କର ସଭାର ଲୋକଙ୍କୁ ଚିହ୍ନାଇଲେ; କିନ୍ତୁ କେହି ଚିହ୍ନି ପାରିଲେ ନାହିଁ । ଦିନେ ଦାନାଟି ଗୋଟିଏ ଝରକା ଉପରେ ଥୁଆ ହୋଇଥିଲା, ଏହି ସମୟରେ ଗୋଟିଏ ଚଢ଼େଇ କୁଆଡ଼ୁ ଉଡ଼ିଆସି ତହିଁରେ ଥଣ୍ଟ ମାରିଦେଲା । ସେତେବେଳେ ଜଣାପଡ଼ିଲା ଯେ, ତାହା ଗୋଟାଏ ଶସ୍ୟର ଦାନା । ଯେ ଦେଖିଲା, ସେ ଆଶ୍ଚର୍ଯ୍ୟ ହେଲା । ସମସ୍ତେ କହିଲେ, "ଏତେବଡ଼ ଶସ୍ୟର ଦାନା ତ କେବେ ଦେଖା ନ

ଥିଲା !” ରାଜା କହିଲେ, “ଆଚ୍ଛା, ରାଜ୍ୟର ବୁଢ଼ା ବୁଢ଼ା ଲୋକଙ୍କୁ ଡକାଇ ପଚାରିବା ।”

ସେ ରାଜ୍ୟର ଯେ ସବୁଠାରୁ ବୁଢ଼ା ଲୋକ, ତାକୁ ଡକାଗଲା । କିଛି ସମୟ ପରେ ଗୋଟିଏ ବୁଢ଼ା ଦି’ କାଖରେ ଦୁଇଟି ବାଡ଼ି ଡିରା ଦେଇ ଲଇଁ ଲଇଁ ଆସି ପହଞ୍ଚିଲା । ବୁଢ଼ାର ଆଖିକୁ ଭଲ ଦେଖାଯାଉ ନ ଥିଲା; ତା’ର ଦେହହାତ ଥରୁଥିଲା । ରାଜା ତାକୁ କହିଲେ, “ବୁଢ଼ା, ଏ ଦାନାଟାକୁ ଦେଖିଲୁ । ଆମ ରାଜ୍ୟରେ କେବେ ଏପରି ଶସ୍ୟ ହେଉଥିଲା କି ?” ବୁଢ଼ା ଅଣ୍ଡାଳି ଅଣ୍ଡାଳି ଦାନାଟିକୁ ଧରି କହିଲା, “ଗ୍ଭମୁ, ଏପରି ସେଂର ଦାନା ମୁଁ ଦେଖିନାହିଁ, କି ଏହାର କଥା ଶୁଣିନାହିଁ । ମୋ ବାପାକୁ ଡାକିଲେ ସେ କହିପାରିବ ।”

ଏ ବୁଢ଼ାର ପୁଣି ବାପ ଅଛି ! ଏ କଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ରାଜା ବୁଢ଼ାର ବାପକୁ ଡକାଇଲେ । ବୁଢ଼ାର ବାପ ଖଣ୍ଡିଏ ମାତ୍ର ବାଡ଼ି ଡିରା ଦେଇ ଅଳ୍ପ ଲଇଁ ଲଇଁ ଆସି ପହଞ୍ଚିଲା । ଆଗ ବୁଢ଼ାଠାରୁ ତାହାର ଆଉ ଟିକିଏ ବେଶି ବଳ ଥିଲା ଓ ତାକୁ ଅଳ୍ପ ଅଳ୍ପ ଦେଖାଯାଉଥିଲା । ସେ ଦାନାଟିକୁ ଦେଖି କହିଲା, “ଆଜ୍ଞା, ମୋ ଅମଳରେ ଇମିତି ଦାନା ଥିବା ଫସଲ ଆମଦାନୀ ହେଉ ନଥିଲା । ମୋ ବାପ ଅମଳରେ ଇମିତି ଫସଲ ଅମଳ ହେଉଥିଲା ବୋଲି ମୁଁ ଶୁଣେ, ତାଙ୍କୁ ଡକାଇ ପଚାରନ୍ତୁ ।”

ଏତେ ବଡ଼ ବୁଢ଼ାର ପୁଣି ବାପ ଅଛି ! ଏ କଥା ଶୁଣି ସମସ୍ତେ ଆହୁରି ଆଶ୍ଚର୍ଯ୍ୟ ହେଲେ । ତା’ ପରେ ରାଜା ତା’ର ବାପାକୁ ଡକାଇଲେ । ତା’ ବାପା ବାଡ଼ି ଭରା ନ ଦେଇ କମ୍ପା ନ ଲଇଁ

ରାଜାଙ୍କ ପାଖରେ ଆସି ପହଞ୍ଚିଲା । ତା' ମୁଣ୍ଡବାଳ ଖୋଷଟେ ଧଳା ହୋଇଯାଇଥିଲା । ପୁଅ ଓ ନାତିଙ୍କ ଅପେକ୍ଷା ତା' ଦେହରେ ବେଶି ବଳଥିଲା । ତା' ଆଖିକୁ ଭଲ ଦିଶୁଥିଲା । ସେ ରାଜାଙ୍କ ପାଖରେ ଥିବା ଦାନାଟିକୁ ହାତରେ ଧରି କହିଲା, "ମହାରାଜ, ମୋ ପିଲାଦିନେ ଏହିପରି ଦାନା ଥିବା ଫସଲ ଆମ ଗାଁରେ ହେଉଥିଲା ।"



ରାଜା ପଚାରିଲେ, "ଆଚ୍ଛା ବୁଢ଼ା, ତୁ କିଆଁ ପୁଅ ନାତିଙ୍କ ଅପେକ୍ଷା ବେଶି ବଳୁଆ ହୋଇଛୁ ? ତୋ ଆଖିକୁ କିପରି ଭଲ ଦିଶୁଛି ? ବାଡ଼ି ନ ଧରି ତୁ କିପରି ଚାଲୁଛୁ ? ତୋ ପୁଅ ନାତି-ମାନେ କାହିଁକି ବାଡ଼ି ଧରି ଚାଲୁଛନ୍ତି ? ସେତେବେଳେ କାହିଁକି ଶସ୍ୟରେ ଏଡ଼େ ଏଡ଼େ ଦାନା ହେଉଥିଲା, ଆଜିକାଲି କାହିଁକି ହେଉନାହିଁ ?

ବୁଢ଼ା ଟିକିଏ ହସି କହିଲା, "ଆଜ୍ଞା, ସେ ସମୟରେ ମାଟି ବଳୁଆ ଥିବାରୁ ଶସ୍ୟ ମଧ୍ୟ ବଡ଼ ବଡ଼ ହେଉଥିଲା । ଏ ଜମିଖଣ୍ଡ ମୋର, ସେ ଜମିଖଣ୍ଡ ତାର, ଏପରି କିଛି ନିୟମ ନ ଥିଲା । ଯେ ଯେଉଁଠି ପାରୁଥିଲା, ସେଠାରେ ସେ ଚାଷ କରିପାରୁଥିଲା । ବହୁତ ଜଙ୍ଗଲ ଥିବାରୁ ଏ ବର୍ଷ ଜଙ୍ଗଲ କାଟି ଏ ଖଣ୍ଡ ଚାଷ କଲେ, ପରବର୍ଷ ଲୋକେ ଆଉ ଖଣ୍ଡେ ଜମି ଚାଷ କରୁଥିଲେ । ସେଥିପାଇଁ ମାଟିର ବଳ କମୁ ନ ଥିଲା । ଲୋକେ ବିଶେଷ ସାରବାନ୍ ଖାଦ୍ୟ ଖାଇ ବଳୁଆ ଓ ନୀରୋଗ ହେଉଥିଲେ । ସେମାନଙ୍କ ମନ ଅତି ସରଳ ଥିଲା । କ୍ରମେ ଲୋକ ବହୁତ ହେବାରୁ ଗୋଟିଏ ଜମି ସବୁବର୍ଷ ଚାଷ ହେଲା । ଏଥିରେ ଜମିର ବଳ କମିଲା । ସେତେ ବଡ଼ ଦାନା ଥିବା ଶସ୍ୟ ଆଉ ହେଲା ନାହିଁ, କି ସେତେ ଫଳିଲା ନାହିଁ । ପରିଣାମରେ ଲୋକେ ଖାଇବାକୁ ମଧ୍ୟ ପାଇଲେ ନାହିଁ । ଅଭାବରେ ପଡ଼ି ଲୋକମାନେ ଠକିବାକୁ ଶିଖିଲେ, ମିଛ କହିଲେ, କ୍ରମେ ସେମାନଙ୍କ ବଳ କମିଆସିଲା, ଦିନକୁ ଦିନ ସେମାନେ ରୁଗ୍ଣ ଓ ଦୁର୍ବଳ ହୋଇଗଲେ । ସେଥିପାଇଁ ମୋ ଅପେକ୍ଷା ମୋ ପୁଅ ନାତିଙ୍କ ବଳ କମ୍ । ତେବେ ଜମିରେ ଉପଯୁକ୍ତ ସାର ଦେଲେ ଓ ଲୋକେ ଲାଗି ପଡ଼ିଲେ ସେହି ଜମିରେ ପୁଣି ଏହିପରି ଦାନା ଫଳିବ ।"

ରାଜା ବୁଢ଼ାର କଥା ଶୁଣି ଅତି ଖୁସି ହେଲେ ଓ ତାକୁ ପୁରସ୍କାର ଦେଇ ବିଦାୟ କଲେ । *

---

* (ପଣ୍ଡିତ ଶ୍ରୀବତ୍ସ ବିଦ୍ୟାଳଙ୍କାରଙ୍କ ସୌଜନ୍ୟରୁ)

## ପ୍ରଶ୍ନ

୧ । ଶସ୍ୟ ଦାନାଟିକୁ କେହି କାହିଁକି ରକ୍ଷିପାରୁ ନ ଥିଲେ ?

୨ । ବୁଢ଼ା ତା' ପୁଅ ଓ ନାତିଙ୍କଠାରୁ କପର ବେଶି ବଳୁଆ ଥିଲେ ?

୩ । ପୂର୍ବେ କାହିଁକି ଶସ୍ୟର ଦାନାଗୁଡ଼ିକ ଏତେ ବଡ଼ ବଡ଼ ହେଉଥିଲା ?

୪ । ପୁଣି କ'ଣ କଲେ ବଡ଼ ବଡ଼ ଦାନାଦାର ଶସ୍ୟ ଫଳିବ ?

୫ । 'କଳା-ଧଳା' ଯେପରି ହୋଇଅଛି, ସେହିପରି ତଳେ ଥିବା ଶବ୍ଦଗୁଡ଼ିକରେ ବିପରୀତ ଶବ୍ଦ ଯୋଗକର :—
ଆଲୁଅ—, ଦିନ—, ସୁଖ—, ଗରିବ— ।

---

## ବାଲିଦେଶର ବାଳକ

ସମୁଦ୍ରକୂଳଯାକ ଖାଲି ବାଲି । ନଈରୁ ପାଣି ଶୁଖି ଆସିଲେ ବାଲି ଦେଖାଯାଏ । ଆମ ଦେଶରେ ଠାଏ ଠାଏ ବାଲିଅଛି । ହେଲେ ଆମ ଦେଶର ପଶ୍ଚିମକୁ ଆରବ ବୋଲି ଯେଉଁ ଦେଶଟି ଅଛି, ସେ ଦେଶସାରା କେବଳ ବାଲି । ହଜାର ହଜାର କୋଶ ଧରି ଗୋଟାଏ ବୁଦା, କି ଗୋଟିଏ ଦୁବଗଛ ସୁଦ୍ଧା ଦେଖିବାକୁ ମିଳିବ ନାହିଁ । ଏପରି ଦେଶକୁ କହନ୍ତି ମରୁଦେଶ । ଏଠାରେ ମଣିଷ କପରି ରହନ୍ତି, ଚିଲ୍ଲା କପରି ଚଳନ୍ତି, ଜାଣ କି ?

ଶହ ଶହ କୋଶ ଅପନ୍ତରା ବାଲି ଭିତରେ କାହିଁ କେଉଁଠି ଠାଏ ଠାଏ ଭଲ ପାଣିର ଝରଣାଟିଏ ଦେଖିବାକୁ ମିଳେ । ସେହି ପାଣି

ମୃରପାଖେ ଗୋଟିଏ ଗୋଟିଏ ସହର ଅଛି । ମରୁଦେଶରେ ଏହିପରି ଜାଗାଟିମାନ ଏକମାତ୍ର ଆଶ୍ରା । ଗୋଟିଏ ସହରରୁ ଆଉ ଗୋଟିଏ ସହରକୁ ଯିବାକୁ ହେଲେ ଶହ ଶହ କୋଶ ଅପନ୍ତରା ବାଲି ଭିତର ଦେଇ ଯିବାକୁ ହୁଏ । ଲୋକେ ଏହି ବାଲିକୁ ଓଟ ଉପରେ ଚଢ଼ି ସୁଖରେ ପାର ହୁଅନ୍ତି । ଏଥିପାଇଁ ଓଟକୁ 'ମରୁଭୂମିର ଜାହାଜ' ବୋଲି କୁହାଯାଏ । ଆରବର ଲୋକଙ୍କୁ 'ବେଦୁଇନ୍' କହନ୍ତି ।



ସେମାନେ ଓଟର ଦୁଧ ଓ ମାଂସ ଖାଆନ୍ତି ଓ ତାର ଚମଡ଼ାରେ ତମ୍ବୁ ତିଆରି କରନ୍ତି । ସେ ଦେଶର ବାଲିରେ ଆମ ଦେଶ ପରି ଭିନ୍ନ ଭିନ୍ନ ଫଳଗଛ ଦେଖିବାକୁ ମିଳେ ନାହିଁ, ଖାଲି ଖଜୁରୀଗଛ ବହୁତ । ବେଦୁଇନ୍‌ମାନେ ଏହି ଖଜୁରୀ-କୋଳି ଖାଇ ବଞ୍ଚନ୍ତି । ସେ ଦେଶର ଖଜୁରୀ-କୋଳି ଦେଖିବାକୁ ଯେପରି ବଡ଼, ଖାଇବାକୁ ସେହିପରି ଭାରି ମିଠା ।

ଆରବ୍ୟଦେଶରେ ପିଲା ଜନ୍ମ ହେବାର ସାତ ଦିନ ପରେ ତାହାର ନାଁ ଦିଆ ହୁଏ । ସେତେବେଳେ କୁଟୁମ୍ବର ଲୋକେ ଓ ପୁରୋହିତ ଘରକୁ ଭୋଜି ଖାଇବାକୁ ଆସନ୍ତି । ଭୋଜିରେ ମେଣ୍ଢା-ମାଂସର ତରକାରି, ଡିମିରିଫଳ, ଖଜୁରିକୋଳରେ ତିଆରି ହୋଇଥିବା ନାନା ଖାଦ୍ୟ ଓ ମଦ୍ୟ ଦିଆଯାଏ ।

ବେଦୁଇନ୍‌ଙ୍କ ଭାଷା ଆରବୀ । ବଡ଼ହେଲେ ବେଦୁଇନ୍ ପିଲା ଆରବୀ ଅକ୍ଷର ଶିଖେ । ଶିକ୍ଷକ କାଠପଟା ଉପରେ ଅକ୍ଷର ଲେଖି ଦିଅନ୍ତି ଓ ପିଲାଏ ତାକୁ ଘୋଷି ଘୋଷି ଶିଖନ୍ତି । ବତେଇବା ଦରକାର ହେଲେ ଶିକ୍ଷକ ବାଲି ଉପରେ ଅକ୍ଷର ଲେଖି ବତାଇ ଦିଅନ୍ତି ।

ଆରବ ଦେଶର ଘୋଡ଼ା ଦେଖିବାକୁ ଭାରି ସୁନ୍ଦର । ପ୍ରତ୍ୟେକ ବେଦୁଇନ୍ ଭଲ ଘୋଡ଼ା ଚଢ଼ି ଜାଣେ । ସେମାନେ ଭାରି କୁଣିଆ-ଚର୍ଚ୍ଚା କରନ୍ତି । ଘରେ କୁଣିଆ ପହଞ୍ଚିଲେ ସେମାନେ ନିଜେ ନ ଖାଇ କୁଣିଆକୁ ଖାଇବାକୁ ଦିଅନ୍ତି । ବାପ ମା ଘରେ ନ ଥିଲେ ଘରେ ଥିବା ଜ୍ୟେଷ୍ଠ ପିଲାମାନେ କୁଣିଆ-ଚର୍ଚ୍ଚା କରିଥାନ୍ତି ।

## ପ୍ରଶ୍ନ

୧ । ମରୁଦେଶ କାହାକୁ କହନ୍ତି ?

୨ । ଆରବର ଲୋକେ କଅଣ ଖାଇ ବଞ୍ଚନ୍ତି ?

୩ । ଅପନ୍ତରା, ପୁରୋହିତ, ଚର୍ଚ୍ଚା, ଆଶ୍ରା, ଭାଷା - ଏମାନଙ୍କ ଅର୍ଥ ବୁଝାଇ ଦିଅ ।

୪ । ଶୂନ୍ୟସ୍ଥାନ ପୂରଣ କର :—

(କ) ଶିକ୍ଷକ—ଉପରେ—ଲେଖିଦିଅନ୍ତି ।

(ଖ) ସେ ଦେଶର—ଦେଖିବାକୁ ଯେପରି— ସେହିପରି ମିଠା ।

# ଆମ ଘରଗୋଡ଼ିଆ ବନ୍ଧୁ

କୌଣସି ଦୂର ଜାଗାକୁ ଯିବାକୁ ହେଲେ ଆମେ ଶଗଡ଼ରେ ବସୁଁ, ବଳଦ ଆମକୁ ଟାଣି ନଏ । ରାତିରେ ଆମେ ଶୋଇବାକୁ



ଗଲେ ଦୁଆରମୁହଁରେ କୁକୁରକୁ ଜଗେଇ ଦେଉଁ । ସେ ରାତିଯାକ ଚେଇଁ ରହେ ଏବଂ ଅଚିହ୍ନା ଲୋକକୁ ଘରେ ପୂରେଇ ଦିଏ ନାହିଁ ।

ଗାଈ ଆମର ପିଲାମାନଙ୍କୁ ଦୁଧ ଖାଇବାକୁ ଦିଏ; ବଳଦ ଗାଡ଼ି ଟାଣେ, ପୁଣି ଆମକୁ ଚାଷ କାମରେ ସାହାଯ୍ୟ କରେ । ତେଣୁ ଗାଈ, ବଳଦ, କୁକୁର, ସମସ୍ତେ ଆମର ଘରଗୋଡ଼ିଆ ବନ୍ଧୁ । ଏମାନେ ମଣିଷର ବହୁତ ଉପକାର କରନ୍ତି । ବିଧାତା ଏମାନଙ୍କୁ ଯେପରି କି ମଣିଷର ବନ୍ଧୁ ହେବାକୁ ଜନ୍ମ ଦେଇଛନ୍ତି ।



ଏହା ଛଡ଼ା ମନୁଷ୍ୟର ଆଉ କେତେକ ଘରଗୋଡ଼ିଆ ବନ୍ଧୁ ଅଛନ୍ତି । ସେମାନଙ୍କ ମଧ୍ୟରୁ ଘୋଡ଼ା, ହାତୀ ଓ ଓଟ ପ୍ରଧାନ ।

ଘୋଡ଼ା ଆମ ଦେଶରେ ଗାଡ଼ି ଟାଣେ । ଲୋକେ ତା' ଉପରେ ବସି ଦୂର ଜାଗାକୁ ଚଞ୍ଚଳ ଯାଇପାରନ୍ତି । ଯୁଦ୍ଧବେଳେ ଘୋଡ଼ାର ଦରକାର ବହୁତ ବେଶି । ଯୋଦ୍ଧାମାନେ ଘୋଡ଼ା ଉପରେ ବସି ଯୁଦ୍ଧ କରନ୍ତି । ବିଲାତରେ ଘୋଡ଼ାଦ୍ୱାରା ଜମି ଚାଷ କରାଯାଏ ।



ହାତୀକୁ ଆମଦେଶରେ ବିଶେଷଭାବରେ ରାଜା ମହାରାଜାମାନେ ପାଳନ୍ତି । ଏହା ଉପରେ ବସି ବଣ-ଜଙ୍ଗଲରେ ଗଲେ ଆଉ ଭୟ ନ ଥାଏ । ବାଘ, ଭାଲୁ ଏହା ଉପରେ ପାଖ ମାଡ଼ନ୍ତି ନାହିଁ । ହାତୀ ପୂର୍ବକାଳରେ ଯୁଦ୍ଧରେ ବଡ଼ କାମ ଦେଉଥିଲା । ଏହାର ହାଡ଼ ଓ ଦାନ୍ତରୁ ସୁନ୍ଦର ସୁନ୍ଦର ଜିନିଷ ତିଆରି ହୁଏ । ସେଗୁଡ଼ିକର ମୂଲ୍ୟ ବହୁତ ବେଶି । ସେଥିପାଇଁ ଲୋକେ କହନ୍ତି, 'ହାତୀ ମଲେ ଲକ୍ଷେ ଓ ଜୀଇଁଥିଲେ ଲକ୍ଷେ ।'



ଓଟ ମରୁଭୂମିମାନଙ୍କରେ ମଣିଷର ବଡ଼ ଉପକାରୀ ବନ୍ଧୁ । ଓଟ ନ ଥିଲେ ସେଠାରେ ଏକ ଜାଗାରୁ ଅନ୍ୟ ଦୂର ଜାଗାକୁ ଚାଲିଲେ ବାଲିରେ ଯାଇ ହୁଅନ୍ତା ନାହିଁ । ଯେଉଁଠାରେ ଯେପରି ବନ୍ଧୁ ଦରକାର, ବିଧାତା ସେଠାରେ ଆମମାନଙ୍କ ପାଇଁ ସେପରି ବନ୍ଧୁ ଦେଇଅଛନ୍ତି ।

ଆମ ଦେଶରେ ହାତୀ ରହିବାର ଜାଗା ଅଛି; କାରଣ ଆମ ଦେଶ ବହୁତ ବଣଜଙ୍ଗଲରେ ପୂର୍ଣ୍ଣ । ହାତୀ ଡାଳପତ୍ର ଖାଇ ନିଶ୍ଚିନ୍ତ ହୋଇ ବଞ୍ଚି ପାରିବ । କିନ୍ତୁ ବିଲାତରେ ଗଛପତ୍ର, ବଣଜଙ୍ଗଲ ଏତେ କମ୍ ଯେ, ଯଦି ହାତୀ ସେଠାରେ ରହିଲେ ସେ ଦେଶକୁ ପଦା କରିଦେବେ । ତେଣୁ ବିଧାତା ସେଠାରେ ହାତୀ ରଖି ନାହାନ୍ତି । ଏଥିରୁ ଜଣାଯାଉଛି ଯେ, ବିଧାତା ଯେଉଁଠାରେ ଯେଉଁ ଶ୍ରେଣୀର ଗୃହପୋଷା ଜନ୍ତୁ ଦରକାର, ସେଠାରେ ସେହି-ଶ୍ରେଣୀର ପ୍ରାଣୀ ଖଞ୍ଜି ଦେଇଛନ୍ତି । ସେମାନେ ନଥିଲେ ମଣିଷକୁ ସୁଖରେ ରହିବା ପାଇଁ ବଡ଼ କଷ୍ଟ ହୁଅନ୍ତା । ସେମାନେ ଥିବାରୁ ମଣିଷରେ ଅନେକ ଦୁଃଖ କଷ୍ଟ ଘୁଞ୍ଚିଯାଉଛି ।

## ପ୍ରଶ୍ନ

୧ । ଗୃହପୋଷା ପ୍ରାଣୀମାନଙ୍କ ମଧ୍ୟରୁ କେଉଁମାନେ ଆମର ଉପକାର କରନ୍ତି ?

୨ । ବିଲାତର ଅନ୍ୟ ନାମ କ'ଣ ? ତାହା ଆମ ଦେଶରୁ କେଉଁ ଦିଗରେ ?

୩ । ଆମ ଦେଶରେ ଘୋଡ଼ାସବୁ ଗୃହ କରାଯାଉଛନ୍ତି ନାହିଁ କାହିଁକି ?

୪ । ହାତୀ ବିଲାତରେ ନ ରହିବାର କାରଣ କ'ଣ ?

---

# ଆମ୍ବ-ପଣସ କଳି

ଦିନେ ଖାଉବେଳେ କାହିଁ ତୋଠା ମାନେ
ଆମ୍ବ ଡାକି କହେ, "ପଣସ ଭାଇ,
ମୋର ରୂପ ଦେଖି କିଏ ନୁହେ ସୁଖୀ ?
ଜିଭ୍ରୁଁ ଲାଳ ବହେ ମତେ ଅନାଇଁ ।



ଦେହଯାକ ତୋର କଣ୍ଟା ସଲବଲ
ଏତେ ବଡ଼ ଦେହ କି ଅସୁନ୍ଦର !
ତୋଳିଲେ ଲାଗିବ ଅଠା ସଲବଲ
ମୋ ଦେହ ଚିକ୍କଣ, ରଙ୍ଗ ଉଜ୍ଜଳ ।"

ପଣସ କହଇ— "ଆରେ ଆମ୍ବ ଭାଇ,
ତୋପରି ଦଶକୁ ମୋ ପରି ଜଣେ,
ମୋତେ ଖାଇବାକୁ ଲୋଡ଼ା ଦଶ ଜଣ,
ଜଣେ ମଣିଷକୁ ଲୋଡ଼ା ତୁ ପଣେ ।

ରୂପ ଲାଗି କିଆଁ ଏତେ ଗର୍ବ କରୁ
ମୋତେ ଅଠା ଲାଗି ଦେଉ ତୁ ଗାଳି,
ମୋ ଅଠା ଲାଗିଲେ ଷତି କା'ର ନାହିଁ
ତୋ ଲସିରେ ଘାଆ ହୋଇବ ଖାଲି ।"

ଆମ୍ବ କହେ, "ତୁମ୍ଭେ ବଡ଼ ଅଳସୁଆ
ଗଛମୂଳେ, ଡାଳ ଡାଳେ ତୁ ଥାଉ,
ଆମେ ଖେଳୁଥାଉଁ ପବନ-ସୁଅରେ,
ଥୋଲ ଥୋଲ ହୋଇ କି ଶୋଭା ପାଉଁ !

ପେଟେ ତୋର ଖାଲି ମଞ୍ଜି ପଣ ପଣ,
କେଡ଼େ ଅସୁନ୍ଦର ଚିରିଲେ ଦିଶେ,
ଆମ ପେଟେ ଥାଏ ଗୋଟିଏ ଟାକୁଆ
ପେଟ ଭରିଥାଏ ଅମୃତ ରସେ ।"

ଆମ୍ବକୁ ଅନାଇଁ ପଣସ କହଇ,
"ନିକଟ ଡାଳ ସାନ ବଡ଼କୁ,
ହାଲୁକା ହେବାରୁ ଥାଉ ତୁ ଉପରେ
ଭର ଯୋଗୁଁ ମୁହଁ ଥାଏ ତଳକୁ ।

ରସ ଖାଇ ମୋର ମଞ୍ଜିକ ଆଘାତ
କରନ୍ତ ମଣିଷ, ଜାଣୁ କି ନାହିଁ ?
ତୋତେ ଖାଇସାରି ତୋ ରସ ନିଗାଡ଼ି,
ଫୋପାଡ଼ି ଦଅନ୍ତି ଟାକୁଆ କାହିଁ ।"
ଆମ୍ବ କହେ ଭାଇ, "ବୁଝିଲି ଏବେ ମୁଁ
ମୋ ଭଳି ମୁଁ ଅଟେ, ତୋ ଭଳି ତୁହି;
ଏକା ତୋଟାମାଳେ ଏକା ଭଳି ବଢ଼ି
କଳି ଲଗିବାର କାରଣ ନାହିଁ ।"

(ସଂଗୃହୀତ)

## ପ୍ରଶ୍ନ

୧ । ଆମ୍ବ ଓ ପଣସ କେଉଁ ସମୟରେ ପାଚେ ?

୨ । ଆମ୍ବ ସଙ୍ଗେ ପଣସର ତୁଳନା କର ।

୩ । ତୋଟାମାଳ, ଗନ୍ଧ, ସଳବଳ, ଆଦର— ପ୍ରତ୍ୟେକକୁ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ଲେଖ ।

୪ । ନିମ୍ନଲିଖିତ ଶବ୍ଦମାନଙ୍କ ମଧ୍ୟରୁ କିଏ କାହାର ଓଲଟା ଅର୍ଥ ବୁଝାଉଛି ଲେଖ :—
ସୁଖୀ, ଲାଭ, ଅସୁନ୍ଦର, ବଡ଼, ଛୋଟ, ଦୁଃଖୀ, ଅମୃତ, ଅନାଦର, ହାଲୁକା, ସୁନ୍ଦର, ଆଦର, ଭାରି ।

# ଖରାପ ସାଙ୍ଗ

ଜଣେ ଭଦ୍ରଲୋକ ତାଙ୍କ ପୁଅ ଲାଗି ବଡ଼ ବ୍ୟସ୍ତ ହେଉଥିଲେ । ସେ ତାଙ୍କର ଏକମାତ୍ର ପୁଅ । ତାଙ୍କର ଧନସମ୍ପଦ ଯଥେଷ୍ଟ ଥିଲା । ସେ ଭାବୁଥିଲେ, ପୁଅଟି ଯୋଗ୍ୟ ହେଲେ ଧନସମ୍ପଦ ରକ୍ଷା କରିବ ଓ ଘରର ମାନ ରହିବ । କିନ୍ତୁ ପୁଅଟି ବଡ଼ ଅମାନିଆ । ବାପ-ମା'ଙ୍କ କଥା ମାନେ ନାହିଁ, ପୁଣି ଖରାପ ଲୋକଙ୍କ ସଙ୍ଗେ ମିଶେ । ବାପା ଭାବିଲେ, ଖରାପ ଲୋକଙ୍କ ସଙ୍ଗେ ମିଶିଲେ, ପୁଅର ସର୍ବନାଶ ହେବ । କାରଣ ଅଳନ୍ଧୁ ଥିବା ଘରେ ପଶିଲେ, ମନୁଷ୍ୟ ଯେପରି କଳା ହୋଇଥାଏ, ଖରାପ ଲୋକଙ୍କ ସାଙ୍ଗରେ ମିଶିଲେ



ତାର ଜୀବନ ସେହିପରି ନଷ୍ଟ ହୋଇଯାଏ । ସେ ଭଦ୍ରଲୋକ ଏହି କଥା ପୁଅକୁ ବୁଝାଇବା ପାଇଁ ସବୁବେଳେ ଚେଷ୍ଟା କରୁଥାନ୍ତି ।

ଖରାଦିନଆ ସମୟ । ଘରେ ଆମ୍ବ ପାଚୁଥାଏ । ସେ ଭଦ୍ରଲୋକ ଦିନେ ସକାଳେ ବାରଟି ଆମ୍ବ କଣିଲେ । ଆମ୍ବଗୁଡ଼ିକ ଦେଖିବାକୁ ଯେପରି ସୁନ୍ଦର, ବାସନା ମଧ୍ୟ ସେହିପରି ମିଠା । ସେଗୁଡ଼ିକୁ ଦେଖିଲା ମାତ୍ରେ ଖାଇବାକୁ ନିଶ୍ଚୟ ମନ ହେବ । ଭଦ୍ରଲୋକଟି ସେଗୁଡ଼ିକ ପୁଅକୁ

ଦେଖାଇ କହିଲେ, "ବାପ, କାଲି ସନ୍ଧ୍ୟାବେଳେ ଏଗୁଡ଼ିକ ଖାଇବୁ ।" ଏହା କହି ସେ ସେଗୁଡ଼ିକ ଗୋଟିଏ ଜାଗାରେ ବନ୍ଦକରି ରଖିଦେଲେ । ଭଲ ଆମ୍ବ ସଙ୍ଗେ ଗୋଟିଏ ପଚୁ ଆମ୍ବ ମଧ୍ୟ ରଖିଥିଲେ ।

ତହିଁ ଆରଦିନ ସଞ୍ଜବେଳେ ପୁଅ ଆମ୍ବ ଖାଇବାକୁ କହିବାରୁ ବାପା କହିଲେ, "ଯାଅ, ସେ ଝୋଟକେଇ ଖୋଲି ଯେତେଟା ଇଚ୍ଛା, ସେତେଟା ଖାଅ ।" ପୁଅ ଝୋଟକେଇ ଖୋଲି, ଦେଖେ ତ, ଗୋଟିଏ ହେଲେ ଆମ୍ବ ଖାଇ ହେବ ନାହିଁ । କାରଣ, ପଚୁ ଆମ୍ବଟି ଅନ୍ୟ ଆମ୍ବ ଭିତରେ ରହିଥିବାରୁ ସବୁ ଆମ୍ବଯାକ ପଚି ଯାଇଛି । ତାକୁ ଦେଖାଇ ବାପା କହିଲେ, "ବାପ ମୋର ! ଠିକ୍ ଏହିପରି, ତୋର ଖରାପ ସାଙ୍ଗମାନଙ୍କ ଦ୍ୱାରା ତୁ ନଷ୍ଟ ହୋଇଯିବୁ ।"

ଭଲ ଆମ୍ବସବୁ ପଚୁ ଆମ୍ବ ସଙ୍ଗେ ରହି କିପରି ପଚିଗଲା, ତାହା ଦେଖି ଓ ବାପାଙ୍କ କଥା ଶୁଣି, ପୁଅଟି ସେହି ଦିନଠାରୁ ଆଉ ଖରାପ ସାଙ୍ଗମାନଙ୍କ ପାଖକୁ ଗଲା ନାହିଁ ।

## ପ୍ରଶ୍ନ

୧ । ଭଦ୍ରଲୋକ ତାଙ୍କ ପୁଅ ପାଇଁ ବ୍ୟସ୍ତ ହେବାର କାରଣ କଅଣ ?

୨ । ପୁଅକୁ ଭଲ ବାଟକୁ ଆଣିବା ପାଇଁ ସେ କି ଉପାୟ କଲେ ?

୩ । ଏ ପାଠ ପଢ଼ି କି ନୀତିଶିକ୍ଷା ପାଇଲ ?

୪ । ସମ୍ପଦ, ଯୋଗ୍ୟ, ମାନ, ସର୍ବନାଶ—ଏମାନଙ୍କର ଅର୍ଥ କହ ।

# ଅଗ୍ନି

କଥାରେ କହନ୍ତି—'ଘରପୋଡ଼ାଠୁଁ ବିପତ୍ତି ନାହିଁ, କି ଚୋରଚୋରାଠୁଁ ସମ୍ପତ୍ତି ନାହିଁ ।' କାରଣ ଚୋର ହେଲେ ହଜିଲା ଜିନିଷ ଫେରି ପାଇବାର ଆଶା, ମାତ୍ର ଯେଉଁ ଜିନିଷରେ ନିଆଁ ଲାଗିଯାଏ, ତାହା ପାଉଁଶ ବା ଅଙ୍ଗାର ହୋଇଯାଏ, ତେଣୁ ଆଉ କୌଣସି କାମରେ ଲାଗେ ନାହିଁ ।

ଅଗ୍ନି ବା ନିଆଁ ପ୍ରକୃତରେ ମନୁଷ୍ୟର ଏକ ଶତ୍ରୁ । ତାକୁ ଛୁଇଁଲେଇ ସେ ଆମ ଦେହହାତ ପୋଡ଼ିଦେବ । ଆମେ ଅସାବଧାନ ହେଲେ ସେ ଆମ ଘରଦ୍ୱାର, ଜିନିଷପତ୍ର ସବୁ ପୋଡ଼ି ଭସ୍ମ କରିଦେବ ।

କିନ୍ତୁ ଏଇ ନିଆଁ ମଧ୍ୟ ଆମର ଉପକାରୀ ବନ୍ଧୁ । ପ୍ରତିଦିନ ଚୁଲିରେ ନିଆଁ ନ ଜଳିଲେ ଆମେ ସମସ୍ତେ ଉପାସ ରହିବା । ସଞ୍ଜବେଳେ ଘରେ ନିଆଁ ନ ଜଳିଲେ, ଆମ ଘରସବୁ ଅନ୍ଧାର ରହିବ । ଶୀତଦିନେ ଟିକିଏ ଶେକ ନ ହେଲେ ଆମ ଦେହ, ହାତ, ଗୋଡ଼ କୋଲ ମାରିଯିବ ।



ନିଆଁ ଆମକୁ ଦୁଇଟା ଜିନିଷ ଯୋଗାଏ । ଗୋଟାଏ ହେଉଛି ଆଲୁଅ, ଅନ୍ୟଟି ହେଉଛି ଉତ୍ତାପ ବା ତାତି । ଆମେ ଚୁଲିରେ ନିଆଁ ଜାଳୁ ଉତ୍ତାପ ପାଇଁ । ସେହି ଉତ୍ତାପରେ ଆମର ଖେଚେଡ଼ି ହୁଏ, ପାଣି

ଗରମ ହୁଏ । ସଞ୍ଜବେଳେ ଘରରେ, ଲଣ୍ଠନରେ ଯେଉଁ ନିଆଁ ଜଳେ, ତାହା କେବଳ ଆଲୁଅ ଦିଏ ।

ପୂର୍ବେ ନିଆଁ ତିଆରି କରିବା ଭାରି କଷ୍ଟର କାମ ଥିଲା । ଲୋକେ କାଠକୁ କାଠ ଘଷି, ପଥରକୁ ପଥରରେ ଘଷି ବା ପଥରକୁ ଲୁହାରେ ଘଷି ନିଆଁ ବାହାର କରୁଥିଲେ । ନିଆଁ ନିଭିଗଲେ ପୁଣି ଜାଳିବା କଷ୍ଟକର ହେବ ବୋଲି କୌଣସି କୌଣସିଠାରେ ଏହାକୁ ସର୍ବଦା ଜଳାଇ ରଖୁଥିଲେ ଓ ତାହା ଯେପରି ନିଭି ନ ଯିବ, ସେଥିପାଇଁ ସର୍ବଦା ଲୋକ ଜଗି ରହୁଥିଲେ । ଏବେ କିନ୍ତୁ ନିଆଁ କାଢ଼ିବା ଭାରି ସହଜ କାମ । ବଜାରରୁ ତିନି ପାଇର ପଇସାରେ ଗୋଟିଏ ଦିଆସିଲି ପେଡ଼ି କିଣି ଆସିଲେ ଆମେ ଏବେ ଯେତେବେଳେ ଇଚ୍ଛା, ସେତେବେଳେ ଦରକାର ଅନୁସାରେ ନିଆଁ ବାହାର କରିପାରୁଥାଉଁ । ସ୍ୱିଡେନ ବୋଲି ଏକ ଦେଶରୁ ଏହି ଦିଆସିଲି ପେଡ଼ି ପ୍ରଥମେ ବାହାରିଥିଲା ।

ଅଗ୍ନି ମନୁଷ୍ୟର ଉପକାରୀ ବନ୍ଧୁ ଜାଣି, ଆମର ପୂର୍ବ ପୁରୁଷମାନେ ଏହାକୁ ପୂଜା କରୁଥିଲେ । ଏବେ ମଧ୍ୟ ଆମଦେଶରେ ଯେ କୌଣସି ପୂଜା ହେଲେ ପୁରୋହିତମାନେ ଅଗ୍ନି ଜାଳି ହୋମ କରନ୍ତି ।

ଅଗ୍ନି, କାଠ, କୁଟା, ତେଲ, ଘିଅ ସବୁ ଖାଇଯାଏ । ଲୁହା ପ୍ରଭୃତି କଠିନ ଧାତୁକୁ ମଧ୍ୟ ପୋଡ଼ି ପାଉଁଶ କରିଦିଏ । ଲୁହା, ସୁନା ପ୍ରଭୃତିର ଭସ୍ମ ବଡ଼ବଡ଼ ରୋଗର ଔଷଧରେ ବ୍ୟବହୃତ ହୁଏ ।

## ପ୍ରଶ୍ନ

୧ । ଆଗକାଳରେ ଲୋକେ ନିଆଁ କିପରି ପାଉଥିଲେ ?

୨ । ନିଆଁ ଆମର କିପରି ଉପକାର କରେ ?

୩ । ଦିଆସିଲି ପ୍ରଥମେ କେଉଁ ଦେଶରେ ତିଆରି ହୋଇଥିଲା ?

---

## ଭାତ, ଡାଲି ଓ ତରକାରି

ଖଳିପତ୍ର—କାହିଁକି ଏ ପର୍ଯ୍ୟନ୍ତ କାହାରି ଦେଖାନାହିଁ ? ସବୁବେଳେ ଘଣ୍ଟାଏ ଖଣ୍ଡେ ମୁଁ ପଡ଼ିରହିବି; ତା’ ପରେ ସମସ୍ତେ ଗୋଟି ଗୋଟି ହୋଇ ଆସିବେ । ଭାତ, ଡାଲି ଆଦି ସମସ୍ତେ ମିଶି କହୁଛନ୍ତି—“ଖଳି ଭାଇ ! ତୁମେ କହ ତ ଆମ ଭିତରେ କିଏ ବଡ଼ !” ମୁଁ ହଁ କଲି । କିନ୍ତୁ କାହିଁ ? ତାଙ୍କର ତ ଏ ଯାଏ ଦେଖାନାହିଁ । କିନ୍ତୁ ସେ କଣରେ କିଏ ବସିଛି ? ଲୁଣ ନା ? ଆସ ଭାଇ ଲୁଣ ! ମୁଁ ଦେଖୁଛି ତୁମ ପରି ଭଲ ପିଲା ସଂସାରରେ ନାହିଁ । ତୁମେ ସବୁବେଳେ ସବା ଆଗେ ଆସ । ଯିଏ ଯେଉଁଠି ଥୋଇଦେଲା, ସେଇଠି ପଡ଼ି ରହିଥାଅ । ତୁମେ ମୋର ପୁରୁଣା ସାଙ୍ଗ । ଭାଇ, ଅନ୍ୟମାନେ କେତେବେଳେ ଆସିବେ ? ଆରେ ଏଇ ଯେ ଭାତ, ଡାଲି, ତରକାରି ସବୁ କହୁ କହୁ ଆସିଲେଣି । ଆସିବେ ନାହିଁ, ଆସିଲେ ସମସ୍ତେ ଏକାଠି ହୋଇ ଆସିବେ । ଜାଗା ପାଇଁ ଖୁନ୍ଦାଖୁନ୍ଦି ହେବେ । ମୁଁ ଏବେ କେଉଁଠି ତାଙ୍କୁ ଜାଗା ଦେବି ? ଆସ ଭାତ, ତୁମେ ଏଇ ମଝିରେ ବସିଲେ ସୁବିଧା ହେବ । ଅନ୍ୟମାନେ ତୁମ ଚାରିପାଖେ ଘେରି ବସନ୍ତୁ ।

ହଁ, ତୁମମାନଙ୍କର ଆଜ ଯାହା କହିବାର ଅଛି ଠିକେ ଠିକେ କହିଯାଅ । ମୁଁ ବହୁତବେଳ ହେଲା ଅପେକ୍ଷା କଲିଣି । ଆଚ୍ଛା, ଡାଲି ! ତମର କ'ଣ କହିବାର ଅଛି କହ ତ ?

ଡାଲି—ମୋର ଏତିକି କେବଳ କହିବାର କଥା ଯେ ମୁଁ ତ ଭାତ ସାଥିରେ ବରାବର ଥାଏ । କିନ୍ତୁ ଖାଇବା କଥା ପଡ଼ିଲା-ବେଳେ କେହି ମୋ ନାଁ ଧରନ୍ତି ନାହିଁ । ଘରେ ଘରେ ଭାତ ସାଥିରେ ଡାଲି ଇତ୍ୟାଦି ସବୁ ଖାଇଲେ; କିନ୍ତୁ ମାଷ୍ଟ୍ରେ ତାଙ୍କୁ ପଚାରିଲେ, ତମ ଭାତ ଖାଇଛ ? ଭାତ ତାହାହେଲେ ଏକା ରହୁ; ଆମେ ଚାଲିଯାଉଁ ।

ଶିକ୍ଷକ— ଆଚ୍ଛା, ଲୁଣିକି । ଆଉ କିଏ ସେ କ'ଣ କହିବ କହ ।

ତରକାରି—ମୁଁ କହିବ । ଖାଲି ଭାତ, ଆମ ଗୁଣ ଭାତ ଓ ଡାଲିଠାରୁ ବେଶି । ତମ ଦେଖ ଗାଉଁଲିଆଙ୍କ ସଙ୍ଗରେ ରହି ଆମର ସବୁ ଯାଉଛି । ଡାକ୍ତରମାନଙ୍କୁ ଯାଇ ପଚାର, ଆମର କେତେ ଗୁଣ ! ଓଡ଼ିଆ ଲୋକେ ନ ଜାଣି ଆମକୁ ସିଝେଇ ମାରନ୍ତି । କିନ୍ତୁ ସାହେବମାନେ ଆମକୁ କଞ୍ଚା ଖାଇଯାନ୍ତି । ସେଥିପାଇଁ ସେମାନେ ରକ୍ତଆ ଦେଖାଯାନ୍ତି । ଆମେ ମଣିଷର ରକ୍ତକୁ ତାଜା ରଖୁଁ ।

ଲାଉ, କଦଳୀ, ବାଇଗଣ କଥା ଛାଡ଼ । ସାମାନ୍ୟ ମୂଠାଏ ଶାଗର ଯେତେ ମୂଲ୍ୟ, ବେଲାଏ ଡାଲି କି ଥାଳିଏ ଭାତର ସେ ମୂଲ୍ୟ ନାହିଁ । ଆମେ ଜୀଅନ୍ତା ଔଷଧ ।

ସେଗୁଡ଼ାକ ମନ୍ଦ ଜିନଷ । ସେଗୁଡ଼ାକ ଘରକଣରେ ପଡ଼ି ରହିଥାନ୍ତି । ଆମେ ଖୋଲା ଜାଗାରେ ଆଲୁଅ ପବନରେ ହସି ଖେଳି ରହୁ । କୁଣିଆ-ମଇସ ଅଇଲେ ଆମକୁ ଖୋଜା ପଡ଼େ । କିନ୍ତୁ ଆମେ ଭାତର ଗୁଳର ପରି ରହିଛୁ । ସେ ଆଗେ, ଆମେ ପଛେ ।

ଶାଗ – ଦେଖ ଖଳି ଭାଇ, ହଳିଆ ବିଲରେ ଧାନ ଚାଷ କରେ । କିନ୍ତୁ ନିଜେ ସାଆନ୍ତାଣୀ ମୋତେ ପାଣି ଦେଇ ବାଡ଼ିରେ ବଢ଼ାନ୍ତି । ଶିଖି ପିଠା ହୋଇଥାଉ ପଛେ, ଶାଗ ଭଜା ଟିକିଏ ନ ଥିଲେ ତାଙ୍କ ପେଟ ପୂରେ ନା । ଏ କଥା ତ ତମେ ଜାଣ, ଖଳି ଭାଇ ! କିନ୍ତୁ ‘ଶାଗଖିଆ’ ବୋଲି ଲୋକେ ଦରିଦ୍ରଙ୍କୁ ଗାଳି ଦିଅନ୍ତି । ଏ କି ଅପମାନ କହିଲ ?

ଶିଖି ପିଠା—ଖଳି ଭାଇ, ଆମକୁ କେବଳ ବଡ଼ ଲୋକମାନେ ଖାଆନ୍ତି । ଶାଗ, ଭାତ, ଡାଲି ଆଦି ଗରିବଙ୍କ ଖାନା ସାଥିରେ ଆମକୁ ମିଶାଇ ଦିଅନା । ଖାଦ୍ୟ ଭିତରେ ଆମେ ସବୁଠୁଁ ଶ୍ରେଷ୍ଠ । ଏ ଗୁଡ଼ାକ ଆମର କେତେ ତଳେ, ସେଥିପାଇଁ ହୁଏ ତ ଆମେ ସବା ଆଗେ, ନ ହେଲେ ସବା ପଛେ ଆସୁଁ ।

ଲୁଣ—ମୁଁ ତ ଧନହୀନ ଲୁଣ । ଭଗବାନ ମୋତେ ଏମାନଙ୍କ ପରି ରୂପ ଦେଇନାହାନ୍ତି କି କହିବାର ଶକ୍ତି ମଧ ଦେଇ-ନାହାନ୍ତି । ତେବେ ଏମାନଙ୍କୁ ଗୋଟିଏ କଥା ପଚାର— ଅଲୁଣା ଜିନଷ କମିତି ଲାଗେ ?

ଟେଳିପକେ—ଭାତ, ତମର କିଛି କହିବାର ଅଛି ?

ଧାନ—ମୋର କିଛି କହିବାର ନାହିଁ । ମୁଁ ଘାସ ପରି ବଢ଼ୁଥିଲି । ମଣିଷମାନେ ମୋତେ ଆଦର କରି ବଢ଼େଇ ମୋ ଫଳକୁ ନାନା ଭାବରେ ଖାଇଲେ । ମୁଁ ଯେ ଲୋକମାନଙ୍କର ଉପକାରରେ ଆସୁଛି, ଏଇଥିରେ ମୁଁ ସୁଖୀ । ମୁଁ ଆଉ କିଛି ଜାଣେ ନା । ମୁଁ ଏମାନଙ୍କୁ କେବେ ଡାକି ଯାଏନା । କୋଟି କୋଟି ଗରିବ ଲୋକେ ମୋତେ ଖାଇ ବଞ୍ଚନ୍ତି । ହଜାର ହଜାର ଗରିବ ଲୋକ ମୋ ପେଜ ମଣ୍ଡାକୁ ଅନାଇଁ ରହନ୍ତି । ଏମାନେ ଆସନ୍ତୁ ବା ନ ଆସନ୍ତୁ, ମୁଁ କପରି ଅଧିକରୁ ଅଧିକ ମଣିଷର ସେବା କରିବି, ଏହାହିଁ ମୋର ପ୍ରାର୍ଥନା ।

ଝୋଲିପଡ଼—ଶୁଣ ସମସ୍ତେ, ଭାତ ଡମ ଭିତରେ ପ୍ରକୃତରେ ବଡ଼ । ତା ପଛକୁ ଲୁଣ । ଖାଲି ଡାଲି କି ତରକାରି ଖାଇ ଲୋକେ ବଞ୍ଚିପାରିବେ ନାହିଁ । କିନ୍ତୁ ଖାଲି ଭାତ ଓ ଲୁଣ ଖାଇ ହଜାର ହଜାର ଗରିବ ଲୋକ ପ୍ରାଣ ଧରି ବଞ୍ଚିଛନ୍ତି । ଦୁଃଖୀ ଦରିଦ୍ରଙ୍କୁ ଯେ ବଞ୍ଚାଇ ରଖେ, ସେହି ହେଉଛି ସବୁଠାରୁ ବଡ଼ । ସେଥିପାଇଁ ଆମ ଦେଶରେ ଲୋକେ ଏତେ କଷ୍ଟ କରି ଧାନ କରନ୍ତି । ଧାନକୁ ଭାତ, ଚୂଡ଼ା, ମୁଢ଼ି, ଉଖୁଡ଼ା, ହୁଡ଼ୁମ୍ବ, ମୁଆଁ, ଲିଆ, ଗୁଡ଼ଲଭଜା, ପିଠା, ଖିରି ପ୍ରଭୃତି କେତେପ୍ରକାର କରି ଖିଆଯାଏ । ଡମ ଭିତରେ ଏମିତି ଉପକାରୀ ଆଉ କିଏ ଅଛି ?

ଭାତ ଛଡ଼ା ସମସ୍ତେ—ନାହିଁ, ନାହିଁ ।

ଝୋଲିପଡ଼—ତାହାହେଲେ ସମସ୍ତେ ଭାତର ହାତ ଧରି ପୁଣି ସାଙ୍ଗ ହୋଇ ଏଠାରୁ ବିଦାୟ ନିଅ ।

ଭାତ ଛଡ଼ା ସମସ୍ତେ :—

ଟାକ୍ ଡୁମାଡୁମ୍ ଟାକ୍ ଡୁମାଡୁମ୍
ଡିଙ୍କି ପଡ଼େ ଡୁମ୍
ଭାତ ଖାଇ ଓଡ଼ିଆ-ପୁଅ
ଲଢ଼ିବେ କର୍ଧୁମ୍ ।
ସାଙ୍ଗେ ଆମେ ଥିବା ସବୁ
ଡାଲି ତରକାରି,
ଭାତରେ ଯାହା ନାହିଁ ତା ଦେବା
ବଢ଼ାଇ ବଢ଼ାଇ ।
ଏକାଠି ଥିଲେ ପାଇବା ଆମେ
ସଭିଙ୍କ ଆଦର,
ଛଡ଼ାଛଡ଼ି ନ ହୋଇ ସଦା
ଭାତର ସାଙ୍ଗ ଧର ।
ଟାକ୍ ଡୁମାଡୁମ୍ ଟାକ୍ ଡୁମାଡୁମ୍
ଡିଙ୍କି ପଡ଼େ ଡୁମ୍,
ଭାତ ଖାଇ ଓଡ଼ିଆ-ପୁଏ
ଲଢ଼ିବେ କର୍ଧୁମ୍ ।

## ପ୍ରଶ୍ନ

୧ । ଖେଳର କେଉଁ କେଉଁ ସ୍ଥାନରେ ଭାତ, ଡାଲି, ତରକାରି ଇତ୍ୟାଦି ଦିଆଯାଏ ?

୨ । ଭାତ ସମସ୍ତ ଖାଇବା ଜିନିଷ ମଧ୍ୟରେ ବଡ଼ କାହିଁକି ?

୩ । ଶାଗ ଖାଇଲେ ମଣିଷର କି ଉପକାର ହୁଏ ?

# ଛାପାଖାନା

ପିଲେ, ଏ ଯେଉଁ ବହିଟି ତୁମେ ପଢୁଛ, ସ୍ବାକୁ କଣ କିଏ ହାତରେ ଲେଖିଛି ? ତୁମ ଶ୍ରେଣୀରେ କେତେ ପିଲା ପଢୁଛନ୍ତି ? ସବୁ ପିଲାଙ୍କର ଯେତେ ବହି ଅଛି, ସେ ସବୁକୁ ହାତରେ ଲେଖି ବସିଲେ କେତେ ସମୟ ଯିବ ? ପୁଣି ଏଇ ଯେଉଁ ବହି ପଢୁଛ, ସେଥିରେ ଅକ୍ଷରଗୁଡ଼ିକ କିପରି ସୁନ୍ଦର, ଗ୍ଭେଟ ଗ୍ଭେଟ, ଗୋଲ ଗୋଲ ଆଉ ସବୁଗୁଡ଼ିକ ସମାନ । ତୁମେ ଏପରି ଅକ୍ଷର ଲେଖି ପାରିବ କି ?

ତୁମେ ଗୋଟିଏ ଖାତା କରିବାକୁ ବସିଲେ ଦୋକାନରୁ କାଗଜ ଆଣ, ତାକୁ ଭାଙ୍ଗ, ପୁଣି ସିଲାଇ କର ଓ ପଟସବୁ କାଟି ଦେଖ । ଧାଡ଼ି ସିଧା ହେବା ପାଇଁ ପ୍ରତି ପୃଷ୍ଠାରେ ରୁଲର ଦେଇ ଗାର କାଟ । ତା'ପରେ କଲମ ଓ ସିଆଇ ସାହାଯ୍ୟରେ ଲେଖ । ଲେଖି ସାରି ଦେଖିବ ଯେ, କେଉଁଠି ମୋଷ୍ଟାଏ କାଳି ପଡ଼ିଯାଇଛି, କେଉଁଠି ଅକ୍ଷର ଏପଟକୁ ଢଳିଛି ତ କେଉଁଠି ସେପଟକୁ ଢଳିଛି; କେଉଁଠି ଗୋଟାଏ ଅକ୍ଷର ଏତେ ବଡ଼ ହୋଇଛି ତ ତା' ପାଖର ଆଉ ଗୋଟାଏ ଅକ୍ଷର ଏତେ ସାନ ହୋଇଯାଇଛି ।

କିନ୍ତୁ ଏ ଯେଉଁ ବହି ପଢୁଛ, ସେଥିରେ ଧାଡ଼ି ସମାନ ଓ ସିଧା, ଅକ୍ଷରଗୁଡ଼ିକ ସମାନ ଓ ସୁନ୍ଦର, କାଳି ସବୁଠି ସମାନ, କାଗଜ ମଧ୍ୟ ପରିଷ୍କାର । ଏହା କୌଣସି ମଣିଷ ହାତରେ ଲେଖି ନାହିଁ ; ଏହା କଳରେ ଲେଖାହୋଇଛି । କଳ କେବଳ ଏହି ଅକ୍ଷରଗୁଡ଼ିକୁ ଲେଖିନାହିଁ, କାଗଜକୁ ଭାଙ୍ଗି, ପୃଷ୍ଠା ସବୁ କାଟି, ସମାନ କରି, ସିଲାଇ କରି, ଏ ବହିକୁ ମଧ୍ୟ ତିଆରି କରି ଦେଇଛି ।

ଯେଉଁଠାରେ ଏସବୁ କାମ ହୁଏ, ତାକୁ ଛାପାଖାନା କୁହାଯାଏ । ଛାପାଖାନାରେ ସୀସାର ଅକ୍ଷର ସବୁ ଜମାଥାଏ । ଯାହା ଛାପାଯିବ, ସେହି ଅନୁସାରେ ସୀସା ଅକ୍ଷରସବୁ ସଜାଇ ରଖାଯାଏ । ତା' ପରେ ସେଥିରେ ଏକପ୍ରକାର ଛାପା-କାଳି ବୋଳି କାଗଜ ଉପରେ ତାକୁ ଚାପି ଦେଲେ ସେଥିରେ ଛାପା ଉଠିଯାଏ । ଏହିପରି ଯେମିତି ଯେତେ ଛାପା ଦରକାର, ସେଇ ସଜା ହୋଇଥିବା ଅକ୍ଷରକୁ ସେତିକି ଥର କାଗଜରେ ଚାପି-ଦେଲେ ମିଳିଯିବ ।



ଆମେ ଗୋଟିଏ ଲେଖାର ଦଶ ବା କୋଡ଼ିଏ ଖଣ୍ଡ ଦରକାର କଲେ, ଆମକୁ ନିଜ ହାତରେ ଦଶ ବା କୋଡ଼ିଏ ଥର ଲେଖିବାକୁ ପଡ଼ନ୍ତା । ଏଥିରେ ବହୁତ ସମୟ ନଷ୍ଟ ଏବଂ ବହୁତ ପରିଶ୍ରମ ମଧ୍ୟ । କିନ୍ତୁ ଛାପାଖାନାରେ, ଥରେ ଅକ୍ଷର ସଜାଡ଼ି-ଦେଲେ, ଦଶ ଖଣ୍ଡ କ'ଣ, ଯେତେ ହଜାର ଖଣ୍ଡ ଚାହିଁବ, ବାହାରି ଆସିବ । ଆଉ ଲେଖିବା ଦରକାର ନାହିଁ ।

ଏହିପରି ଛାପାଖାନାମାନଙ୍କରୁ ଏବେ ଲକ୍ଷ ଲକ୍ଷ ପୁସ୍ତକ ଓ ଖବରକାଗଜ ପ୍ରତିଦିନ ବାହାରୁଛି । ପୂର୍ବେ ବହି ଅଭାବରୁ ଅନେକ ଲୋକ ମୂର୍ଖ ରହୁଥିଲେ । କେବଳ ରାଜା ବା ବଡ଼ ଲୋକମାନେ ଲେଖକ ଲଗାଇ ବହି ଲେଖି ଘରେ ସାଇତି ରଖୁଥିଲେ । କିନ୍ତୁ ଏବେ ଛାପାଖାନା ଯୋଗୁଁ ବହି ସବୁ ଶସ୍ତାରେ ମିଳୁଛି । ଅତ୍ୟନ୍ତ ଗରିବ ଲୋକ ମଧ୍ୟ ଏବେ ଯେଉଁ ବହି ଲୋଡ଼ିବ, ତାହା କିଣି ପଢ଼ିପାରିବ । ତାହା ଛାପାଖାନା ଯୋଗୁଁ ସମ୍ଭବ ହୋଇଛି ।

## ପ୍ରଶ୍ନ

୧ । ବହିପତ୍ର କିପରି ଛପାଯାଏ, ତାହା ବର୍ଣ୍ଣନ କର ।

୨ । ଛାପାଖାନା ଯୋଗୁଁ ଆମର କ'ଣ ଉପକାର ହେଉଛି, ଲେଖ ।

୩ । ଶୂନ୍ୟସ୍ଥାନ ପୂରଣ କର :—

(କ) ପୂର୍ବେ ବହି ଅଭାବରୁ ଅନେକ ଲୋକ — ରହୁଥିଲେ ।

(ଖ) ଛାପାଖାନା ଯୋଗୁଁ ବହିସବୁ — ମିଳୁଛି ।

---

## ଆମ ଗାଁ

ଏ ସଂସାରେ ଥାଉ ଯେତେ
ସହର ବଜାର
କଟକ, ଲଣ୍ଡନ, ପୁରୀ,
ପୁନା, ହରଦ୍ୱାର ।

ଆଉ ଚଢ଼ି ଗାଡ଼ି ଘୋଡ଼ା
ହଜାର ହଜାର,
ହୋଇଥାନ୍ତୁ ସେ ସମସ୍ତେ
ଶୋଭାର ଭଣ୍ଡାର ।
ଆଥାନ୍ତୁ ସେଠାରେ ଧନୀ,
ବଡ଼ଲୋକ ଯେତେ,
ଭରିଥାଉ ପଛେ ଟଙ୍କା
ତାଙ୍କର ପକେଟେ ।



ମୋ ଗାଁଅଟି ସବୁଠାରୁ
ପ୍ରିୟ ଥାନ ମୋର,
ସେ ମାଟିରେ ଲଗି ଅଛି
ମୋର ସ୍ନେହ-ଡୋର ।

ମୋ ଗାଁଆର ବାଲବାଡ଼,
　　ପୋଖରୀ, ଝରବନ,
ମୋ ଗାଆଁର ନଈଘାଟ,
　　ଦେଉଳ, ବନସ୍ତ ;
ମୋ ଗାଆଁର ଗୋରୁପଲ,
　　କୃଷୀ ବନ୍ଧୁ ଭାଇ,
ଗୋବିନ୍ଦ ପଧାନ ବୁଢ଼ା,
　　ବଟିଆ କକାଇ,
ଗୁନମାଉଁ, ସାନ ଖୁଡ଼ୀ,
　　ମାଳୀଘର ଆଈ,
ବୁଢ଼ୀ ହାଡ଼ି, କେଉଟ ସେ
　　ମୁକୁନ୍ଦ ତରାଇ ;
ଏମାନଙ୍କ ସ୍ନେହ ଶ୍ରଦ୍ଧା
　　ଶୋଭା ଏ ମାଟିର
ପଲ୍ଲୀର ଏ ଶାନ୍ତି, ସୁଖ
　　ମମତା ଗଭୀର—
କେଉଁ ସହରରେ ମୋତେ
　　ମିଳିବ କେଉଁଠି ?
ମୋ ମନ, ମୋ ଗାଆଁ ମାଟି
　　ତେଣୁ ନାଏ ଲୁଟି !
ମୋ ଗାଆଁଟି ପ୍ରିୟ ମୋର
　　ତେଣୁ ଏ ଭୁବନେ
କେଉଁ ଆନ ଏଡ଼ା ପର
　　ନ ଆସେ ମୋ ମନେ

ବଡ଼ ହେଲେ କରିବ ମୁଁ
ମୋ ଗାଆଁ ଉନ୍ନତ
ଶୁଝିବ ମୋ ଋଣ ମୋର
ଜନ୍ମମାଟି ପ୍ରତ ।

## ପ୍ରଶ୍ନ

୧ । ତୁମେ ବଡ଼ ହେଲେ ତୁମ ଗାଁର କ କ ଉନ୍ନତ କରିବ ?

୨ । ଗାଁ ଠାରୁ ଦୂରରେ ରହିଲେ କେଉଁ କେଉଁ ବିଷୟ ମନେ ପଡ଼ି ତୁମ ମନରେ ବେଦନା ଜନ୍ମେ ?

୩ । ତୁମ ଗାଁ ବିଷୟରେ ଗୋଟିଏ ରଚନା ଲେଖ ।

୪ । "ଏମାନଙ୍କ ସ୍ନେହ···ମମତା ଗହ୍ୱର—"ଦେଟି ବୁଝିଇ ଦିଅ ।

---

## ଲାଖ ଗଛ

ପିଲାମାନେ ହାତରେ ଯେଉଁ ବାଡି ମାରି ଖେଳନ୍ତି ଓ ମାଆମାନେ ଝିଅମାନଙ୍କୁ ଯେଉଁ ନାଲିରଙ୍ଗର ଚୂଡ଼ି ଧରାଇ ଦେଇଥାନ୍ତି, ସେସବୁ ଲାଖରେ ତିଆରି । ଆମ ଦେଶରେ ଲାଖେରୀ ବୋଲି ଗୋଟିଏ ଜାତି ଅଛନ୍ତି । ସେମାନେ ବାଟି, ଚୁଡ଼ି, ଚୂଡ଼ି, ମୁଆଁଡ଼ ଇତ୍ୟାଦି ନାନାପ୍ରକାର ଜିନିଷ ଓ ଖେଳନା ତିଆରି କରି ହାଟରେ ଓ ଗାଆଁମାନଙ୍କରେ ବୁଲାଇ ବିକନ୍ତି । ଅଳ୍ପଦିନ ହେଲା କଳ ସାହାଯ୍ୟରେ ସୁନ୍ଦର ସୁନ୍ଦର କାଚର ଚୂଡ଼ି, ମୁଆଁଡ଼ ଇତ୍ୟାଦି ବାହାରିବାରୁ ହାତତିଆରି ଲାଖଚୂଡ଼ିର ଆଦର କମିଯାଇଛି ।

ପୂର୍ବେ ସ୍ତ୍ରୀଲୋକମାନେ ଲାଖର ଚୁଡ଼ୀ ବ୍ୟବହାର କରୁଥିଲେ । ଆଜି ସୁଦ୍ଧା କେତେକ ଜାତିର ସ୍ତ୍ରୀମାନେ ଲାଖଚୁଡ଼ୀ ବ୍ୟବହାର କରୁଛନ୍ତି । ଗ୍ରାମୋଫୋନ୍ ରେକର୍ଡ଼, ପାନଆ ଓ ବଜାରରେ ଜାପାନୀ ତିଆରି ଯେଉଁ ଖେଳନା କୁଣ୍ଢେଇଗୁଡ଼ିକ ଆମେ ଦେଖୁଁ, ସେସବୁ ଲାଖ ତିଆରି ଜିନିଷ । ଅଲତା ଓ ନାନାପ୍ରକାର ରଙ୍ଗ ମଧ୍ୟ ଲାଖରେ ତିଆରି ହେଉଛି । ତେଣୁ ଲାଖ ଗୋଟିଏ ବଡ଼ ଦରକାରୀ ଜିନିଷ । ଏହା ଗୋଟିଏ ଝୁଣାଜାତୀୟ ପଦାର୍ଥ । ମହୁମାଛିମାନେ ଯେପରି ଫୁଲର ରସ ସଂଗ୍ରହ କରି ମହଣ ଓ ମହୁ ତିଆରି କରନ୍ତି, ସେହିପରି ଲାଖପୋକମାନେ କୁସୁମ, ପଳାଶ, ବରକୋଳି ଇତ୍ୟାଦି ଗଛର କୋମଳ ଶାଖା ପ୍ରଶାଖାର ରସ ଶୋଷଣ କରି ସେହି ରସକୁ ଲାଖରୂପରେ ପରିଣତ କରନ୍ତି ।

ଲାଖଗୃଷ ଛୋଟନାଗପୁରର ମାଲଅଞ୍ଚଳ ଓ ଓଡ଼ିଶାର ବଣାଇ, ବାମଣ୍ଡା ଓ କେନ୍ଦୁଝର ଜିଲ୍ଲାର ଜଙ୍ଗଲମାନଙ୍କରେ ବହୁ ପରିମାଣରେ ଦେଖାଯାଏ । କୁସୁମ, ପଳାଶ, ବରକୋଳି, ଡିମିରି ପ୍ରଭୃତି ଗଛମାନଙ୍କରେ ବୈଶାଖ, ଜ୍ୟେଷ୍ଠ ଏବଂ କାର୍ତ୍ତିକ ଓ ମାର୍ଗଶିର ମାସରେ ଦୁଇ ଥର ଲାଖ ବିହନ ଲଗାଯାଏ । ବୈଶାଖ ଓ ଜ୍ୟେଷ୍ଠ ମାସର ଗୃଷ କାର୍ତ୍ତିକରେ ଏବଂ ମାର୍ଗଶିର ମାସର ଗୃଷ ବୈଶାଖ ମାସରେ ଆମଦାନି କରାଯାଏ । ଏହି ଆମଦାନି ସମୟକୁ ଲାଖ ପୋକଗୁଡ଼ିକର ଉତ୍ପନ୍ନହେବା ସମୟ ହୋଇଥାଏ । ବିହନ ଗଛରେ ଲଗାଇବାର ପ୍ରାୟ ଦୁଇମାସ ଆଗରୁ ଗଛର ୨।୩ ଇଞ୍ଚ ମୋଟା ଡାଳକୁ ଦୁଇ ସମାନ ଭାଗରେ କଟାଯାଏ । କାଟିବାଦ୍ୱାରା ନୂତନ କଅଁଳିଆ ଶାଖା ପ୍ରଶାଖା ବାହାରେ । ସେ ଡାଳମାନଙ୍କରେ ବିହନ

ଲମ୍ବ ଥିବା ଡାଙ୍ଗ ଖଣ୍ଡିଏ ଲେଖାଏଁ ବାନ୍ଧିଦିଆଯାଏ । ଏକଫୁଟ ଲମ୍ବର ବହନଡାଙ୍ଗ ଦଶ ଫୁଟ ଲମ୍ବ ଡାଳକୁ ବହନ ଯୋଗାଏ । ଏହି ବହନ ଡାଙ୍ଗରୁ ପୋକ ବାହାରି ଡାଳରେ ଲଟକି ଥାଆନ୍ତି । କଣ୍ଟିବନ ଯାଏ ଏମାନେ କଅଁଳ ଡାଳର ରସ ଖାଇ ଲାଖ ପ୍ରସ୍ତୁତ କରନ୍ତି । ପୋକ, ଲାଖରେ ତାହାର ଯୋଡ଼ଣୀ କରେ, ଅର୍ଥାତ୍ ଲାଖପୋକ ଅସରପୋକ ପରି ଲାଖରେ ଯୋଡ଼ାଇ ହୋଇ ରହେ । ଅଣ୍ଡିରା ପୋକଗୁଡ଼ିକ ଏଥିରୁ ବାହାରି ଚାଲିଯାଆନ୍ତି, କିନ୍ତୁ ମାଈ ପୋକଗୁଡ଼ିକ ରସରେ ଯୋଡ଼ାଇ ହୋଇ ରହି ଡିମ୍ବ ଦେବା ଆରମ୍ଭ କରନ୍ତି । ଯେତେବେଳେ ଲାଖପୋକର ଯୋଡ଼ଣୀ ମୋଟା ଦେଖାଯାଏ, ସେତେବେଳେ ଚାଷୀମାନେ ଲାଖଗଛରୁ ଲାଖ କାଟି ବହନ ରଖନ୍ତି ଓ ବିକି କରନ୍ତି ।

ଲାଖ ଚାଷ କରିବାରେ ବେଶି ପରିଶ୍ରମ ଲାଗେ ନାହିଁ । ବହନଡାଙ୍ଗରୁ ଅତି ଶୀଘ୍ର ସହସ୍ର ସହସ୍ର ଲାଖ ପୋକ ବାହାରି କଅଁଳିଆ ଶାଖା ପ୍ରଶାଖାର ରସ ଖାଇବା ସମୟରେ ପିମ୍ପୁଡ଼ି, ଉଇ, କନ୍ଧା ପ୍ରଭୃତି ତାଙ୍କୁ ଖାଇଯାଆନ୍ତି । ଏଣୁ ଏ ସମୟରେ ଗଛମୂଳ ଖୋଳି ଖାରି ପ୍ରଭୃତି ଦେଲେ ଉକ୍ତ କନ୍ଧା, ପିମ୍ପୁଡ଼ିଙ୍କ କବଳରୁ ରକ୍ଷା ମିଳେ । ଥରେ ନୂତନ ଗଛର ଡାଳକୁ କାଟି ବହନ ଲଗାଯାଏ; ତାହା ପରେ ଉକ୍ତ ଗଛକୁ ବହନ ଦେବା ଉଦ୍ଦେଶ୍ୟରେ ଡାଳ କାଟିବାକୁ କିମ୍ବା ବହନ ଦେବାକୁ ପଡ଼େ ନାହିଁ । କାରଣ ଲାଖ ଆମଦାନି ସମୟରେ ଡାଳ କଟାଯାଇ ଲାଖ ସଂଗ୍ରହ କରାଯାଏ ଏବଂ ସେ ସମୟରେ ବହନ ପାଇଁ କେତେକ ଗଛର ଲାଖ ଛାଡ଼ି ଦିଆ ହୋଇଥାଏ ।

## ପ୍ରଶ୍ନ

୧ । କେଉଁ କେଉଁ ଗଛରୁ ଲଖ ବାହାରେ ?

୨ । କେଉଁ ଗଡ଼ଜାତ ରାଜ୍ୟମାନଙ୍କରେ ଲାକ୍ଷାଚାଷ ହେଉଛି ?

୩ । ଲାଖଗୃଷ କପରି ହୁଏ—ଏ ବିଷୟରେ ତୁମ ବନ୍ଧୁଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖ ।

୪ । ଲାଖରୁ କ କ ଜିନିଷ ତିଆରି ହେଉଛି ?

୫ । ଲାଖରୁ, ପାନର ପରି ଆଉ ତିନୋଟି ଜାତିର ନାମ କହ ।

---

## ଡାକଘର

ଶିକ୍ଷକ—ପିଲେ, ଏଇ ହେଉଛି ଡାକଘର । ଏଇ ଡାକଘର କଥା ତୁମକୁ ଆଜି ବୁଝାଇ ଦେବି । ଗୋପାଳ, ତମେ ବୁଝ, ଆମ ସ୍କୁଲର ଗୋଟିଏ ଘଣ୍ଟା ପାର୍ଶ୍ୱେଲରେ ଆସିବାର ଥିଲା, ଆସିଛି କି ନାହିଁ ।

ଗୋପାଳ—କାହାକୁ ପଚାରିବି ?

ଶିକ୍ଷକ—ଯାଅ, ପୋଷ୍ଟମାଷ୍ଟରଙ୍କୁ ପଚାର । ନଚେତ୍ ଦେଖ, ସେ କୋଣରେ 'ଇନ୍‌କ୍ୱାର୍ଯ୍ୟ' ବା 'ଅନୁସନ୍ଧାନ' ବୋଲି ଲେଖାଅଛି । ସେଠି ଜଣେ କିରାଣୀ ବସିଥିବେ, ତାଙ୍କୁ ପଚାରିଦେଲେ ସେ ମଧ୍ୟ କହିଦେବେ । ଘଣ୍ଟା କମ୍ପାନୀ ପାଖରୁ ଏଇ ରସିଦଖଣ୍ଡି ଆସିଛି । ଏଇ ରସିଦରୁ ପାର୍ଶ୍ୱେଲ୍‌ର ନମ୍ବର ଓ ତାରିଖ ଇତ୍ୟାଦି ମିଳିବ । ଏତିକି ଜାଣିଗଲେ ଡାକଘର

ଲୋକେ ଗଦା ହୋଇଥିବା ପାର୍ଶଲ୍ ଭିତରୁ ଆମ ପାର୍ଶଲ୍‌ଟି ସହଜରେ କାଢ଼ି ଦେଇ ପାରିବେ । ତମେ ଯାଅ ।

(ଗୋପାଳ ଚାଲିଗଲା)

ଶ୍ୟାମସୁନ୍ଦର, ତୁମେ ଘରକୁ ଚିଠି ଦେବ ପରା ! ଯାଅ, ଗୋଟିଏ ଲଫାଫା କିଣିଆଣ । ଏଇ ଦେଖ ଝରକା



ଡାକଘର

ଉପରେ ଲେଖାଅଛି— "ପୋଷ୍ଟକାର୍ଡ୍, ଲଫାଫା ଓ ଡାକ-ଟିକଟ ଏହିଠାରେ ମିଳେ ।"

(ଶ୍ୟାମସୁନ୍ଦର ଚାଲିଗଲା)

ଆଉ ରାମ, ତମେ ଯାଅ. ଗୋଟିଏ ମନିଅର୍ଡ଼ର ଫାରମ୍ ମାଗିଆଣ । ମୁଁ ଜଣକ ନିକଟକୁ ଟଙ୍କା ପଠାଇବି ।

( ରାମ ଚାଲିଗଲା )

(ଗୋପାଳ ଫେରିଲା)

କି ଗୋପାଳ ? ପାର୍ଶଲ ଆସିଛି ?

ଗୋପାଳ—ହଁ ମହାଶୟ, ଆସିଛି । ପଚିଶ ଟଙ୍କା ସତାଅଶୀ ନୂଆ ପଇସା ଦେଲେ ପାର୍ଶଲଟି ମିଳିବ ବୋଲି କହିଲେ ।

ଶିକ୍ଷକ—ହଉ, ଟଙ୍କା ଦେଇ ପାର୍ଶଲଟି ନେଇ ଆସ । ରସିଦରେ ଦସ୍ତଖତ କରିବାକୁ ହେବ । ମୋ ପାଖକୁ ଆଣ, ମୁଁ ଦସ୍ତଖତ କରି ଦିଏଁ ।

(ଗୋପାଳ ଚାଲିଗଲା)

ଶ୍ୟାମ—ଏଇ ଲଫାଫା ଆଣିଲି ।

ଶିକ୍ଷକ—ବେଶ୍, ତା'ଉପରେ ତୁମ ମାଁ'ଙ୍କ ନାମ, ଗାଁର ନାମ ଓ ତୁମ ସେଠା ପୋଷ୍ଟଅଫିସର ନାମ ଲେଖିଦିଅ ; ଅଉ ବନ୍ଦକରି ସେଇ କାନ୍ଥରେ ଥିବା ଗାତ ବା ଡାକବାକ୍ସରେ ଗଳାଇ ଦିଅ ।

ଶ୍ୟାମ—ମା ନିଶ୍ଚେ ମୋ ଚିଠି ପାଇବେ ତ ? ଏଠି ଚିଠିଖଣ୍ଡି ଗଳେଇଦେଲେ କିଏଁଶ ତାହା ଗାଁରେ ଯାଇ ପହଞ୍ଚିବ ?

ଶିକ୍ଷକ—ସେଇଥିପାଇଁ ପରା ଏଇ ଡାକଘର ସବୁ ବସିଛି ? ତାଙ୍କ କାମ ହେଉଛି, ଚିଠି ସଂଗ୍ରହ କରିବା ଆଉ ଚିଠି ବାଣ୍ଟିବା । ଡାକବିଭାଗ ସେଥିପାଇଁ ଆମଠାରୁ ପଇସା ନିଏ । ତମେ ଲଫାଫାଟି ପାଇଁ ଯେଉଁ ପଇସା ଦେଲ, ତାହାହିଁ ହେଉଛି ତମ ଚିଠିଟି ଏଠୁ ଗାଁକୁ ବା ଗାଁରୁ ଅନ୍ୟ ଯେଉଁଠିକି ପଠାଇବାର ଖର୍ଚ୍ଚ । ସେହିପରି ମନିଅର୍ଡ଼ର, ପାର୍ଶଲ, ପୋଷ୍ଟକାର୍ଡ଼ ସବୁଥିପାଇଁ ପଇସା ଦେବାକୁ ହୁଏ । ସେଇ ପଇସାରେ ଡାକବିଭାଗର କର୍ମଚାରୀମାନେ ଦରମା ପାଆନ୍ତି ।

ଏଇ, ରାମ ଅଇଲାଣି । ରାମ, ତମେ ବନମାଳୀ ପଟ୍ଟନାୟକ, ପୋ: କେନ୍ଦ୍ରାପଡ଼ା, ଜିଲ୍ଲା-କଟକଙ୍କ ଠିକଣାରେ ମୋଠାରୁ ୨୦ ଟଙ୍କା ପଠାଇ ଦିଅ । ଫର୍ମ ପୂରଣ କରି ଟଙ୍କା ଜମା ଦେଇ ଆସ । କେତେ ଫିସ୍ ପଡ଼ିବ, ଜାଣିଛ ?

ରାମ—ହଁ ମହାଶୟ, ପ୍ରତି ଦଶ ଟଙ୍କାକୁ ପନ୍ଦର ନୂଆ ପଇସା । ମୋଟ କୋଡ଼ିଏ ଟଙ୍କା ୩୦ ନୂଆ ପଇସା ଦିଅନ୍ତୁ, ମୁଁ ଜମା କରି ଦେଇ ଆସିବି ।

ଶିକ୍ଷକ—ଆଚ୍ଛା ଚାଲ । ଗୋପାଳ ପାର୍ଶଲ୍‌ଟି ମୁକୁଳେଇବଣି । ଆମ ସ୍କୁଲର ନୂଆଘଣ୍ଟାଟି ଦେଖିବା । ରାମ, ତମର ବି କାହାକୁ ଚିଠି ଲେଖିବାର ଥିଲେ ପଚାରି ! ଅଳ୍ପ ଲେଖିବାର ଥିଲେ ଯାଅ ଖଣ୍ଡିଏ ପୋଷ୍ଟକାର୍ଡ଼ କିଣିଆଣ; ବେଶୀ ଯଦି ଲେଖିବାର ଥାଏ, ତେବେ ଲଫାଫା ବ୍ୟବହାର କରିବ । ସ୍କୁଲ୍ ଯିବା ।

## ପ୍ରଶ୍ନ

୧ । ଡାକଘର ଦ୍ୱାରା ଲୋକଙ୍କର କି କି ଉପକାର ହେଉଛି ?

୨ । ଡାକବିଭାଗ ଲୋକଙ୍କଠାରୁ ପଇସା ନେଇ କି କାର୍ଯ୍ୟରେ ଖର୍ଚ୍ଚ କରନ୍ତି ?

୩ । ବାକ୍ୟରେ ବ୍ୟବହାର କର :—

ଖୋଜ ଖବର, କର୍ମଚାରୀ, ମୁକୁଳେଇବା ।



# ମାଳ ଅଞ୍ଚଳର ବଣପର୍ବତ

ମଧୁ—ବାପା, ଆମ ଏଇ ମାଳ ଅଞ୍ଚଳରେ ବଣପର୍ବତ ପୂରି ରହିଛି । ଶିକ୍ଷକ ସେଦିନ କହୁଥିଲେ, ଏହି ବଣପର୍ବତ ଗୁଡ଼ାକ ଓଡ଼ିଶାର ଧନ । ଏଗୁଡ଼ାକ ଧନ କିପରି ବାପା ?

ବାପା—ଧନ କହିଲେ ତୁ କ'ଣ ବୁଝୁଛୁ ମଧୁ ! ଖାଲି ଟଙ୍କା ପଇସା, ସୁନା ରୁପା, ଧାନ ମୁଗ, ଧନ ନୁହେ । ଲୋକର ଦରକାରରେ ଯେଉଁଟା ଆସିଲା, ସେଇଟା ହେଲା ତାର ଧନ । ମହୁମାଛିର ମହୁଫେଣାକ ତା'ର ଧନ, ଗଉଡ଼ର ଗାଈଗୋରୁ ଦି'ଟା ତାର ଧନ, ଗୋରୁର ଘାସ କେବଳ ତା'ର ଧନ । ଜଗତରେ ଯେଉଁ ମାଟି ପଥର, ଫୁଲ ଫଳ, ଜଳ ଆଦି ରହିଅଛି, ସେଗୁଡ଼ିକ ଧନ । ଏସବୁ ସୃଷ୍ଟିଆଡ଼େ ପୂରି ରହିଅଛି । ତାକୁ ମଣିଷ କାମରେ ଲଗାଇ ପାରିଲେ ହେଲା । ଯେ ଲଗାଇ ପାରୁଛି, ସେ ଧନୀ ହୋଇପାରୁଛି ।



ବଣପର୍ବତ

ମଧୁ—ଏ ଶୁଖିଲା ପଥର, ମାଟି, କାଠ—ଏଗୁଡ଼ାକ କଅଣ କାମ ଦେଉଛି ବାପା ?

ବାପା—ତୁ ବୁଝିପାରୁ ନାହୁଁ ମଧୁ, ପଥରରୁ ଘର କାନ୍ଥ, ବନ୍ଧ, ମୂର୍ତ୍ତି, ବାସନ, କେତେ କ'ଣ ହେଉଛି । ମାଟିରେ ସେହିପରି ଘର, କାନ୍ଥ, ମୂର୍ତ୍ତି ଓ ବାସନ ସବୁ ହେଉଛି । ଲୁହାମିଶା

ପଥରରୁ ଲୁହା ବାହାରି କେତେ କାମ ନ ହେଉଛି ! ଗଛରୁ କାଠ ବାହାରୁଛି । ସେହି କାଠରେ କଡ଼ି, ବରଗା, କବାଟ, ବାକ୍ସ, ସିନ୍ଦୁକ, ଆଲମାରି ସବୁ ହେଉଛି । ଗଛର ଫଳ, ଫୁଲ, ପତ୍ର ଖାଇ କେତେ ପ୍ରାଣୀ ବଞ୍ଚିଛନ୍ତି । ସେହି ଗଛର ଚେର ଓ ବକଲକୁ ଔଷଧ କରି ଲୋକେ ରୋଗରୁ ଭଲ ହେଉଛନ୍ତି ।

ମଧୁ—ବାପା ! ବାଘ, ସିଂହ ତ ଫଳମୂଳ ଖାଆନ୍ତି ନାହିଁ ?

ବାପା—ସେମାନେ ଫଳମୂଳ ଖାଉ ନାହାଁନ୍ତି ସତ, ମାତ୍ର ଫଳମୂଳ ଖାଇ ବଞ୍ଚିଥିବା ପ୍ରାଣୀଙ୍କୁ ସେମାନେ ଖାଇ ବଞ୍ଚୁଛନ୍ତି ।

ମଧୁ—ସତ ବାପା, ଗଡ଼ଜାତ ଜଙ୍ଗଲ ଧନରେ ପୂରିରହିଛି ।

ବାପା—ଖାଲି ସେତିକି ନୁହେଁ ମଧୁ ! ଏହି ବଣଗୁଡ଼ିକ ଓଡ଼ିଶାକୁ ଓ ଓଡ଼ିଶା ବାହାରକୁ ବହୁତ ଧାତୁ ଜିନିଷ, କାଠ, ଫଳମୂଳ, ତେଲ ଆଦି ଯୋଗାଉଛି । ପୁଣି ଏହି ବଣଗୁଡ଼ିକ ଭିତରେ ଠାଏ ଠାଏ ଏପରି ସୁନ୍ଦର ସ୍ଥାନ ଅଛି ଯେ, ଦେଖିଲେ ସେଠାରୁ ଆସିବାକୁ ଆଉ ମନ ହେବ ନାହିଁ । ବାମଣ୍ଡା ରାଜ୍ୟର ଦେବଗଡ଼ରେ ଥିବା ପ୍ରଧାନପାଟ, ବଣାଇର ଖଣ୍ଡାଧାର ଜଳପ୍ରପାତ, ଦଶପଲ୍ଲାର ବଡ଼ମୂଲଘାଟି, ମହାନଦୀର ସାତ-କୋଶିଆ ଗଣ୍ଡ, ବଡ଼ାମ୍ବା, ଖଣ୍ଡପଡ଼ା, ନୟାଗଡ଼, ନରସିଂହପୁର ପ୍ରଭୃତିର ଜଙ୍ଗଲ ଭିତରେ ବହୁତ ସୁନ୍ଦର ସ୍ଥାନ ରହିଅଛି । ମୟୂରଭଞ୍ଜ ଓ କେନ୍ଦୁଝରର ପର୍ବତମାନଙ୍କରୁ ଲୁହାମିଶା ପଥର ବାହାରୁଅଛି । ଏହା ବ୍ୟତୀତ ଅନ୍ୟ ଧାତୁର ଖଣି ମଧ୍ୟ କେତେକ ଗଡ଼ଜାତରେ ଅଛି । ତାଳଚେରରୁ ପଥରକୋଇଲା ବାହାରୁଛି । ପ୍ରକୃତରେ 'ଓଡ଼ିଶା ମାଳଅଞ୍ଚଳର ବଣ ଓଡ଼ିଶାର

ଧନ’ ବୋଲି ଶିକ୍ଷକ ଯାହା କହୁଛନ୍ତି, ତାହା ଠିକ୍ । କଟକ ଜିଲ୍ଲାର ସୁକିନ୍ଦା ଜଙ୍ଗଲରୁ ଲୁହା ପଥର ବର୍ତ୍ତମାନ ଜାପାନକୁ ପଠାହେଉଛି । ଓଡ଼ିଶା ସରକାର ଏଥିରୁ କୋଟି କୋଟି ଟଙ୍କା ଲାଭ ପାଇବେ ।

## ପ୍ରଶ୍ନ

୧ । ଧନ କାହାକୁ କହନ୍ତି ?

୨ । ପଥରରୁ ଓ କାଠରୁ କିପରି ଟଙ୍କା ଆମଦାନୀ ହେଉଅଛି ?

୩ । ଓଡ଼ିଶାର କେଉଁ କେଉଁ ରାଜ୍ୟରେ ଜଳପ୍ରପାତ ଅଛି ?

୪ । ଲୁହାମିଶା ପଥର କେଉଁ ରାଜ୍ୟରୁ ମିଳେ ?

୫ । କେଉଁ କେଉଁ ମାଳଅଞ୍ଚଳରେ ପଥର୍‌କୋଇଲା ଖଣି ଅଛି ?

୬ । ଯାହାର ଧନ ଅଛି, ସେ ଧନୀ । ଯାହାର ଗୁଣ ଅଛି, ସେ — । ଯାହାର ଜ୍ଞାନ ଅଛି, ସେ — । ଯାହାର ରୂପ ଅଛି, ସେ — ।

—:O:—

## ବହୁରୂପୀ ଜଳ

ଆମେ ପ୍ରତିଦିନ ପାଣିରେ ଗାଧୋଉଁ, ପାଣି ପିଉଁ, ବଗିଚାରେ ପାଣି ଦେଉଁ, ପାଣିରେ ଲୁଗାପଟା ସଫା କରୁ । ଜଣାପଡ଼ୁଛି, ପାଣି ବଡ଼ ଧୀର, ସ୍ଥିର, ଶାନ୍ତ । ଯେଉଁଠି ରଖ, ସେହିଠାରେ ରହିଥାଏ ବା ଯେଉଁଠାକୁ ନେଇଯିବ, ସେଠାକୁ ସେ ଯିବ ।

କିନ୍ତୁ ପାଣି ପରି ବହୁରୂପୀ ପୃଥିବୀରେ ଦ୍ୱିତୀୟ ନାହିଁ । କୂଅ ପୋଖରୀରେ ଯେଉଁ ପାଣି ନିତାନ୍ତ ଶାନ୍ତ ଦେଖାଯାଏ, ସେହି

ପାଣି ସମୁଦ୍ରରେ ଓ ବଢ଼ିଲା ନଈରେ ଭୟଙ୍କର ହୋଇ ଉଠେ । ସମୁଦ୍ରରେ ସେ ବଡ଼ ବଡ଼ ଜାହାଜକୁ ବୁଡ଼ାଇଦିଏ । ନଈରେ ସେ ମଣିଷ, ଗାଈଗୋରୁ, ବଡ଼ ବଡ଼ ଗଛ, ଘରଦ୍ୱାର ଭସାଇ ନିଏ ।

ସେହି ପାଣି ପୁଣି ଦେଖାଦିଏ—ସକାଳେ ସବୁଜ ଘାସ ଉପରେ କାକର ହୋଇ, ଅସଂଖ୍ୟ ମୁକ୍ତା ବିଞ୍ଚା ହେଲା ପରି । ସେହି ପୁଣି ମେଘ ଓ କୁହୁଡ଼ି ହୋଇ ପବନରେ ଉଡ଼ି ବୁଲେ । ପୁଣି ତାହା ବରଫ ହୋଇ ପଥର ପରି ଟାଣ ହୁଏ, ବର୍ଷା ସାଥିରେ ବେଳେବେଳେ କୁଆପଥର ହୋଇ ପଡ଼େ ।



କୂଅ, ନଈ ଓ ପୋଖରୀମାନଙ୍କରେ ପାଣି ଅଛି ବୋଲି ଆମେ ବଞ୍ଚିଛୁ । ପାଣି ବିନା ଆମେ ବେଶିକ୍ଷଣ ବଞ୍ଚିପାରିବା ନାହିଁ । ପୁଣି ଜମିରେ, ବଗିଚାରେ ପାଣି ଯୋଗୁଁ କ୍ଷେତ ହୁଏ, ଫୁଲଫଳ ହୁଏ; ଯାହା ସବୁ ଖାଇ ଆମେ ବଞ୍ଚୁ; ତେଣୁ ପାଣି ଆମକୁ ଖାଇବା ଓ ପିଇବା ଉଭୟ ଯୋଗାଏ । ବର୍ଷାକାଳରେ ଆମଦେଶରେ ଏତେ ବର୍ଷା ହୁଏ ଯେ ନଈ ନାଳ, କୂଅ, ପୋଖରୀ ସବୁ ଭର୍ତ୍ତି ହୋଇଯାଏ । ନଈରେ ବଢ଼ି ହୋଇ କ୍ଷେତସବୁ ପାଣିରେ ବୁଡ଼ି ରହେ ।

ବର୍ଷାଋତୁ ଚାଲିଯାଏ । ତା'ପରେ ଶରତ୍ ଓ ହେମନ୍ତଋତୁ ଆସେ । ପାଣି ସବୁ କ୍ରମେ କମି, ଶୁଖି ଶୁଖି ଆସେ । ଗ୍ରୀଷ୍ମଋତୁରେ ଟାଣ ଖରା ହେଲେ ନଈ, ପୋଖରୀ ଶୁଖିଯାଏ; କୂଅପାଏ ଶୁଖା

ଜଳ ସେସବୁରେ ନ ଥାଏ । ଖରାଦିନେ ଲୋକେ ଜଳ ବିନା ଭାରି କଷ୍ଟ ପାଆନ୍ତି ଓ ବର୍ଷାକୁ ଅନାଇଁ ରହନ୍ତି; କିନ୍ତୁ ପାଣି ତା'ର ନିଜର ଖିଆଲ ଅନୁସାରେ କାମ କରେ । ତା'ର ଇଚ୍ଛା ଯେତେବେଳେ ହେବ, ସେତିକବେଳେ ଆସିବ । ଯେତେବେଳେ ଆସିବ, ଆମର ଦରକାର ନ ଥିଲେ ମଧ୍ୟ ସେ ଅଜାଡ଼ି ହେଉଥିବ ।

କିନ୍ତୁ ଆମେ ବାହାରୁ ଦେଖି ପାଣିକି ଯେପରି ପାଗଳ ବୋଲି ଭାବିବା, ସେ ପ୍ରକୃତରେ ତାହା ନୁହେଁ । ସେ ଠିକ୍ ତାର ନିଜ ନିୟମ ଅନୁସାରେ କାମ କରେ ଏବଂ ଯାହା କରେ ତାହା ଲୋକଙ୍କ ମଙ୍ଗଳ ପାଇଁ । ଆମର ମଙ୍ଗଳ ସକାଶେ ସେ ନାନା ରୂପ ଧାରଣ କରେ । ଆମମାନଙ୍କ ପାଇଁ ସେ ଖରାରେ ବାଷ୍ପ ହୋଇ ଉପରକୁ ଉଠେ ଓ ପୁଣି ଦରକାର ବେଳକୁ ଆକାଶରୁ ପାଣି ହୋଇ ଝରେ । ଅଧିକା ପାଣି ଭୂଇଁତଳକୁ ଚାଲି-



ଯାଏ । ଝରଣା ହୋଇ ଆପେ ଆପେ ବାହାରେ ବା ଆମେ ଆମ ଦରକାର ପାଇଁ କୂଅ ଖୋଳିଲେ ପୁଣି ଆସି ଆମର ସେବା କରେ ।

ଆମ ଦେଶରେ ଆଷାଢ଼ ମାସର ପ୍ରଥମ ଦିନ ବା ଇଂରାଜୀ ଜୁନ୍ ମାସର ୧୩ ବା ୧୪ ତାରିଖକୁ ବର୍ଷାଋତୁ ଆରମ୍ଭ ହୁଏ । ପାଣିକି ଆମେ ଦୁଷ୍ଟ ବା ପାଗଳ କହିଲେ ମଧ୍ୟ, ଆଶ୍ଚର୍ଯ୍ୟ କଥା ଏହି ଯେ ପ୍ରତିବର୍ଷ ସେ ଠିକ୍ ଏହି ସମୟକୁ ଆସି ମେଘରୂପେ ଦେଖା ଦେଇ

ବର୍ଷାଋତୁ ଆରମ୍ଭ କରି ଦିଏ । ଜଳ ନିଜେ ବିଶୁଦ୍ଧ । ପୃଥିବୀରେ ପଡ଼ିଲେ ପୃଥିବୀର ମଇଳା ସେଥିରେ ମିଶିଯାଇ ତାହା ଅପରିଷ୍କୃତ ହୋଇଉଠେ । କିନ୍ତୁ ପାଣିକୁ ଫୁଟେଇ, ଛାଣି, ମଇଳା ଅଂଶ ବାହାର କରିନେଲେ ପାଣି ପୁଣି ବିଶୁଦ୍ଧ ହୋଇଯାଏ । ବିଶୁଦ୍ଧ ଜଳ ପିଇବାର ଅଭ୍ୟାସ କଲେ ପେଟରେ ରୋଗ ହେବ ନାହିଁ ।

## ପ୍ରଶ୍ନ

୧ । ପାଣି ଆମର କି କି କାମରେ ଲାଗେ ?

୨ । କୂଅପାଣି ଓ ନଈପାଣି ଭିତରେ ପ୍ରଭେଦ କ'ଣ ?

୩ । ବର୍ଷାଋତୁ କେବେ ଆରମ୍ଭ ହୁଏ ?

୪ । ପାଣିକୁ କିପରି ବିଶୁଦ୍ଧ କରାଯାଏ ?

---

## ଚଷା ଭାଇ

ତନ୍ତୀ ଦିଏ ବସ୍ତ୍ର, ଧୁଏ ତା' ରଜକ
ଆମେ ପିନ୍ଧି ହେଉ ଫୂର୍ତ୍ତି,
ଚମାର ଯୋଗାଏ ଜୋତା, ଚଟି ପାଦେ
ଧୂଳି ନ ଲାଗେ କେଉଁଠି ।

ବଢ଼େଇ ଯୋଗାଏ ପଲଙ୍କ, ଚଉକି,
ବସୁ ଶୋଉ ମଉଜରେ,
ସୁନାରୀ ଯୋଗାଏ ହାର, ମୁଦି, ଖାଡ଼ୁ
ପିନ୍ଧୁ ମନ-ଆନନ୍ଦରେ ।

ରୋଗ, ବ୍ୟାଧି ହେଲେ ବଇଦ ନାଡ଼ିକା
ଦେଖି ଦିଏ ଔଷଧ,
ଦୋକାନକୁ ଗଲେ ଦୋକାନୀ କରଇ
ନାନା ଦ୍ରବ୍ୟ ମନବୋଧ ।
ସବୁ ହେବ ସିନା ପେଟ ନ ପାଇଲେ
ଦୁଇ ଓଳି ଡାଲି ଭାତ,
କି ହେବ ଚଉକି, ପଲଙ୍କ, କଙ୍କଣ ;
କି ହେବ କୁରୁତା, ପାଟ !
ସବୁ ସୁଖ-ଭୋଗ ହେବ, ଯଦି ପଡ଼େ
ପେଟେ ଅନ୍ନ ଯଥା କାଳେ,
ଅନ୍ନ ବିନା କିଏ ବଞ୍ଚି ପାରିବ ବା
କେତେ ଦିନ ଏ ଧରାରେ ?
ସେ ଅନ୍ନ ଆମକୁ ଯୋଗାଇ ଦେଉଛି
ଗାଆଁର ଦରିଦ୍ର ଚଷା,
ଚଷା-ଦୁଃଖ ଆହା ! କେହି ନ ଦେଖନ୍ତି
ଲୋକହସା ତା ବେବସା ।
ବଇଶାଖ ଖରା, ଶିରାବଣ ଧାରା
ନ ମାନି ସେ କରେ ଶ୍ରମ,
ମାଟି ତାଡ଼ୁଥାଏ, ଶସ୍ୟ ପାଳୁଥାଏ,
ନ ଜାଣଇ ସୁଖ କ'ଣ !
ସେ ନିଜେ, ତା' ପିଲେ ଚିରା ମଇଳିଆ
ଲୁଗା ସଦା ପିନ୍ଧିଥାନ୍ତି,
ପଡ଼ିଲେ ବାଧକ ଚିକିତ୍ସା ପାଇଁକି
ହାତରେ ନ ଥାଏ ପାଣ୍ଡି ।

ସମଗ୍ର ଜଗତେ ଖାଦ୍ୟ ଯୋଗାଉଛି
ଯିଏ, ତାର ଏ ଦୁର୍ଦ୍ଦଶା !
ଡାକୁଅଛୁ ଆମ ସମସ୍ତଙ୍କୁ ଯିଏ
ତାଙ୍କୁ କହୁ, "ଏଠା ଚଷା !"



ବଡ଼ ହେଲେ ମୁହିଁ ଦେଖିବି କପରି
ମୋ ଦେଶର କୃଷୀମାନେ,
ଅନ୍ୟ ସଭ୍ୟ ଦେଶ କୃଷୀ ପରି କେହ୍ନେ
ରହିବେ ସୁଖେ ସମ୍ମାନେ ।

## ପ୍ରଶ୍ନ

୧ । ଚଷାଭାଇ ଆମର କପରି ଉପକାର କରେ ?

୨ । ବସ୍ତ୍ର, ରଜକ, ବ୍ୟାଘ୍ର, ଅନ୍ନ, ଶ୍ରମ, ମଲାଛୁଆ, ଧର୍ମ, ପାଣ୍ଡି ଓ ଦୁର୍ଦ୍ଦଶା—ଏଗୁଡ଼ିକର ଅର୍ଥ ଲେଖ ।

୩ । ଭୁଲଥିଲେ ସଂଶୋଧନ କର :—

(କ) ସୁନାସ୍ତ ଖଞ୍ଜପିଲଙ୍କ ଗଡେ଼ ।

(ଖ) ଗଉଡ଼ ଲୁଗା ବୁଣେ ।

(ଗ) ତନ୍ତୀ ଦୁଧ ଦୁହେଁ ।

---

## ସୁବୁଦ୍ଧିଙ୍କ ସୁବୁଦ୍ଧି

ସାଧାରଣରେ ଲୋକେ ପଇସାଟିଏ ମୁଠାରୁ ଛାଡ଼ନ୍ତି ନାହିଁ । ପାଞ୍ଚ ପଇସା କାହାକୁ ଦେଲାବେଳକୁ ଲୋଭ ଲାଗେ । ମାତ୍ର ସଂସାରରେ ପୁଣି ଲୋକ ଅଛନ୍ତି, ଯେଉଁମାନେ ଦେଶର ଭଲ ପାଇଁ, ଲୋକମାନଙ୍କର ମଙ୍ଗଳ ପାଇଁ, ହଜାର ହଜାର ଟଙ୍କା ଦେଇ ପକାନ୍ତି ।

ଆଜକୁ ସତୁରି ବର୍ଷ ତଳେ ବଡ଼ାମ୍ବା ମୁଲକରେ ଗୋପୀନାଥ-ପୁର ଗାଁରେ ମଦନମୋହନ ସାହୁ ବୋଲି ଜଣେ ଲୋକ ଜନ୍ମ ହୋଇଥିଲେ । ତାଙ୍କୁ ପିଲାଦିନେ ସମସ୍ତେ ମୋହନ ସାହୁ ବୋଲି ଡାକୁଥିଲେ । ବଡ଼ାମ୍ବା ମୁଲକରେ ମହାନଦୀକୂଳରେ ଗୋପୀନାଥ-ପୁର ଗୋଟିଏ ବଡ଼ ମହାଜନ ଗାଁ । ସେଥିରେ ଅନେକ ତେଲି ମହାଜନ ବାସ କରନ୍ତି । ଗାଁଟି ମହାନଦୀ କୂଳରେ ଥିବାରୁ ନାନା ବେପାର କରି ଲୋକମାନେ ସୁଖରେ ଚଳନ୍ତି । ମୋହନ ସାହୁଙ୍କ ବାପା ବଡ଼ ଗରିବ ଥିଲେ । ଜମିବାଡ଼ି ତାଙ୍କର କିଛି ନ ଥିଲା । ଦିନେ ଖାଇଲେ ଦିନେ ଉପବାସ ରହୁଥିଲେ । ମୋହନଙ୍କର ଆଉ ଜଣେ ଭାଇ ଥିଲେ । ତାଙ୍କ ନାଁ ନଟବର । ମୋହନ ଓ ନଟବର ପ୍ରଥମେ ଗାଁ- ଚାଟଶାଳୀରେ ପଢ଼ିଲେ । ଗରିବ ଅବସ୍ଥା ଯୋଗୁଁ ସେ

ଦୁହେଁ ବେଶି ପଢ଼ିପାରିଲେ ନାହିଁ । ପୁଣି ଏହି ସମୟରେ ସେମାନଙ୍କ ବାପା ମରିଗଲେ । କିପରି ପୋଷି ହେବେ, ତାଙ୍କୁ ସେ ଚିନ୍ତା ଆସି ଘାରିଲା । ଦୁଇ ଭାଇଙ୍କ ଭିତରେ ମୋହନ ସାହୁ ସିଆଣିଆ ଓ ପରିଶ୍ରମୀ ଥିଲେ । ବଡ଼ ହେବା ସଙ୍ଗେ ସଙ୍ଗେ ସେ ଭାବିଲେ, କିପରି ଧନ ରୋଜଗାର କରିବେ । ସେ ପ୍ରଥମେ ପରର ବୋଝ ମୂଲ ଲାଗି ଯେଉଁ ଦୁଇ ପଇସା ପାଇଲେ, ସେଥିରେ କୁଟୁମ୍ବ ପୋଷିଲେ । ଯେଉଁ ଗୁରି ପଇସା ବଳେ, ତାକୁ ସାଇତି ରଖନ୍ତି । ସେ, ଦିନେ ହେଲେ ପରଦ୍ୱାରେ ହାତ ପତେଇ ନଥିଲେ । ଖରା ନାହିଁ, ବର୍ଷା ନାହିଁ, ସଦାବେଳେ ମୋହନ ସାହୁ କାମରେ ଲାଗିଥାନ୍ତି । ତାଙ୍କ ଇଚ୍ଛା କିପରି ପାଞ୍ଚପଇସା ସାଇତି ରଖିବେ । ମନ ଥିଲେ ଧନ ମିଳେ । ଧୀରେ ଧୀରେ ମୋହନ ସାହୁ ପାଞ୍ଚ ଦଶ ଟଙ୍କା ରଖି ତେଲ, ଲୁଣ, ପରିବା ଇତ୍ୟାଦିର ଦୋକାନଟିଏ କଲେ । ଦୋକାନଟିରେ ଖୁବ୍ ଲାଭ ହେଲା, ଧନ ମଧ୍ୟ ବଢ଼ିଲା । ତା' ପରେ ମୋହନ ସାହୁ ବଡ଼ ଦୋକାନଟିଏ କଲେ । ଗୁଡ଼, ଧାନ, ମୁଗ, କୋଟଲା ପ୍ରଭୃତି କିଣି କଟକରେ ବେପାର ଆରମ୍ଭ କଲେ । ସେ ସତ୍ ଉପାୟରେ ଧନ ଅର୍ଜନ କରିବାର ଦେଖି ବଡ଼ାମ୍ବା ରାଜା ତାଙ୍କୁ ସୁବୁଦ୍ଧି ପଦ ଦେଲେ । ଏଣିକି ତାଙ୍କୁ ମୋହନ ସୁବୁଦ୍ଧି ବୋଲି ସମସ୍ତେ ଡାକିଲେ । ସୁବୁଦ୍ଧି ମଧ୍ୟ ବେପାର କରି ହଜାର ହଜାର ଟଙ୍କା ପାଇଲେ । କାଲି ଯେଉଁ ଲୋକ ଦାଣ୍ଡରେ ମୂଲିଆ ପରି ବୁଲୁଥିଲା, ଏବେ ସେ ଲକ୍ଷେ ଟଙ୍କାର ମାଲିକ । ଯେ ଶୁଣିଲା, ସେ ଆଶ୍ଚର୍ଯ୍ୟ ହେଲା । ସମସ୍ତେ କହିଲେ—ମୋହନ ସୁବୁଦ୍ଧିଙ୍କ କପାଳ ଫିଟିଲା ।

ମୋହନ ସୁବୁଦ୍ଧି ଏତେ ଟଙ୍କା ପାଇ ଅଳସୁଆ ହୋଇଯାଇ ନ ଥିଲେ । ସେ ବେଶି ବେଶି କାମରେ ଲାଗିପୁଣି ବହୁତ ଟଙ୍କା

ରୋଜଗାର କଲେ । ସେ ଭାବିଲେ, "ଧନ ଅର୍ଜିଲେ ଧର୍ମ କରି, ଧର୍ମେ ପ୍ରାପତ ନରହରି ।" ସେ ବହୁତ ଟଙ୍କା ଲଗାଇ ତାଙ୍କ ଗାଁ ପାଖ ସିଂହନାଥ ପଠାରେ ଗୋଟିଏ ଧର୍ମଶାଳା କରାଇଲେ । ରାସ୍ତା ନିକଟରେ କୂଅ, ପୋଖରୀ ଖୋଳାଇଲେ । କେତେକ ସ୍ଥାନରେ ଆମ୍ବତୋଟା ଲଗାଇଲେ । ସେ ଏକାବେଳକେ ତେଇଶ ହଜାର ଟଙ୍କା ଦେଇ ବଡ଼ାମ୍ବାରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ କରାଇଲେ । ପ୍ରତିବର୍ଷ ସେଥିରେ ଶହ ଶହ ପିଲା ପଢ଼ିଲେ । ଏସବୁ କାମ ଦେଖି ଇଂରେଜ ସରକାର ତାଙ୍କୁ ରାୟସାହେବ ପଦ ଦେଇଥିଲେ ।

ରାୟସାହେବ ମଦନ ମୋହନ ସୁବୁଦ୍ଧି ମରିଗଲେଣି । ତାଙ୍କ ପୁଅ ଦୀନବନ୍ଧୁ ଚୌଧୁରୀ ଆହୁରି ସତର ହଜାର ଟଙ୍କା ଦେଇ ଏହି ବିଦ୍ୟାଳୟକୁ ଲଗାଇ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଦୁଇଟି ଶ୍ରେଣୀ ଖୋଲିଲେ । ସେ ମଧ୍ୟ ତାଙ୍କର ଏହି କାର୍ଯ୍ୟ ସକାଶେ ସରକାରଙ୍କଠାରୁ ରାୟସାହେବ ପଦ ପାଇଲେ । ଯେତେଦିନ ଯାଏ ଏହି ସ୍କୁଲଟି ଥିବ, ସେତେଦିନ ଯାଏ ବାପ ପୁଅଙ୍କର ସୁନାମ ହେଉଥିବ ।

## ପ୍ରଶ୍ନ

୧ । ଯେଉଁ ଲୋକ ମୂଲ ଲାଗୁଥିଲା, ସେ ଏତେଗୁଡ଼ାଏ ଟଙ୍କା କେଉଁଠୁ ପାଇଲା ?

୨ । ମୋହନ ସାହୁ କିପରି ମୋହନ ସୁବୁଦ୍ଧି ହେଲେ ?

୩ । ବାପ ପୁଅ ଦୁହେଁଯାକ ରାୟସାହେବ ପଦ କିପରି ପାଇଲେ ?

୪ । ଯୁଟିଲା, କପାଳ ଫିଟିଲା, ହାତ ପତେଇ ନ ଥିଲେ, ନାଁ ପଡ଼ିଥିବ—ଏମାନଙ୍କୁ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼ ।

# କଟକ ସହର

ତ୍ରିଲୋଚନ ଓ ମଧୁସୂଦନ ଏକା ଗାଁର ପିଲା ଓ ଏକା ସ୍କୁଲରେ ପଢ଼ନ୍ତି । ତ୍ରିଲୋଚନର ମାମୁଁ କଟକରେ ଚାକିରି କରନ୍ତି । ଥରେ ଛୁଟିରେ ତ୍ରିଲୋଚନର ମାମୁଁ ତାକୁ ଗାଁରୁ କଟକ ନେଇଗଲେ । କଟକରୁ ଫେରିଲା ପରେ ତ୍ରିଲୋଚନ ମଧୁସୂଦନର ଘରକୁ ଯାଇ କଟକରୁ ମାମୁଁ ଦେଇଥିବା ରସଗୋଲା ଓ ଲଡ଼ୁ ମଧୁସୂଦନର ବୋଉକୁ ଦେଲା । ମଧୁସୂଦନର ବୋଉ ଆଦରରେ ଦୁହିଁଙ୍କୁ ଜଳଖିଆ ଖାଇବାକୁ ଦେଲେ । ଦୁଇ ସାଙ୍ଗ ଖାଉଥିବା-ବେଳେ ମଧୁସୂଦନ ତ୍ରିଲୋଚନକୁ କଟକ ସହର କଥା ପଚାରିଲା ।

ମଧୁସୂଦନ—ତ୍ରିଲୋଚନ, କଟକରେ କ'ଣ କ'ଣ ଦେଖିଲୁ କହ ତ ?

ତ୍ରିଲୋଚନ—ଭାଇ, କେତେ କଥା ଦେଖିଲି । ସବୁ କ'ଣ ମନେ ଅଛି ନା, ମୁଁ ସବୁ କଥାର ନାଁ ଜାଣିଛି । ମାମୁଁ ଯାହା ଯାହା ବୁଝାଇ ଦେଇଥିଲେ, ସେଇ କେତୋଟି କଥା ଖାଲି ମନେ ଅଛି ।

ମଧୁସୂଦନ—ହଉ, ତୁ ଏବେ ଯେତିକି ମନେ ରଖିଛୁ, ସେତିକି କହ ।

ତ୍ରିଲୋଚନ—ଭାଇ, ତୁ ଗୋଟି ଗୋଟି କରି ପଚାରିଲେ ମୁଁ ଗୋଟି ଗୋଟି କରି ଉତ୍ତର ଦେବି । ଖାଲି କହିଗଲେ ତୁ ସବୁଯାକ ରସଗୋଲା ଖାଇପିବୁ—ମୁଁ କିଛି ପାଇବି ନାହିଁ ।

ମଧୁସୂଦନ—ତୁ କେଡ଼େ ପେଟୁ ତ୍ରିଲୋଚନ ! ତୁ ତ କଟକରେ କେତେ ରସଗୋଲା ଖାଇଥିବୁ । ତୋର ପୁଣି ସେଥିକି

ଲୋଭ ଏତେ କାହିଁକି ? ଆମେ ପିଠା ଖାଇ ନାହୁଁ । ହଉ, ମୁଁ ଏବେ ତମେ ପଚାରୁଛି ! ତୁ କଟକ କମିତି ଗଲୁ କହ ?

ତ୍ରିଲୋଚନ—ରେଳରେ ।

ମଧୁସୂଦନ—ବାଟରେ କ'ଣ କ'ଣ ଦେଖିଲୁ ?

ତ୍ରିଲୋଚନ—ବାଟରେ ତ ଦୁଇ ପାଖରେ ଗାଁଗଣ୍ଡା, ବିଲ ବଣ, ପାହାଡ଼ ପର୍ବତ ଧାଡ଼ ଲାଗିଛି । ଶେଷକୁ ପଡ଼ିଲା ମହାନଦୀ ପୋଲ । ସେଥିରେ ରେଳଗାଡ଼ି ଗୁଡ଼୍‌ଗୁଡ଼୍ ଘଡ଼ ଘଡ଼ ଶବ୍ଦ ହେଲା । ମହାନଦୀ ପ୍ରାୟ କୋଶେ ଓସାର । ଖୁବ୍ ମୋଟ ମୋଟ ଲୁହାକଡ଼ିମାନ ପକାଇ, ନଈବାଲିରେ ମସ୍ତବଡ଼ ପଥରଖୁଣ୍ଟ ବସାଇ କମ୍ପାନୀ ସେ ପୋଲ ତିଆରି କରିଛି । ଗାଡ଼ିରୁ ପାଣିକି ଚାହିଁଲେ ମୁଣ୍ଡ ବୁଲାଇଦେବ । ପୋଲ ଡେଇଁବା ପରେ କଟକ ଷ୍ଟେସନ ପଡ଼ିଲା ।

ମଧୁସୂଦନ—ସେଠାରେ ଓହ୍ଲାଇଲ ? ଆଉ କିଏ ସବୁ ଓହ୍ଲାଇଲେ ?

ତ୍ରିଲୋଚନ—ଭାଇ, ଶହ ଶହ ଲୋକ ଗାଡ଼ିରୁ ଓହ୍ଲାଉଥାନ୍ତି, ଗାଡ଼ିରେ ଚଢ଼ୁଥାନ୍ତି, କିଏ କାହାକୁ ଚିହ୍ନିଛି । ଯାତ୍ରୀମାନଙ୍କ ପରି ମଣିଷ ଠେଲାଠେଲି ପେଲାପେଲି ହେଲେ । ମାମୁଁ ଓ ମୁଁ ଷ୍ଟେସନର ବାହାରକୁ ଆସି ଗୋଟାଏ ଘୋଡ଼ାଗାଡ଼ିରେ ବସିଲୁଁ । ସେଠାରେ ଅସଂଖ୍ୟ ଘୋଡ଼ାଗାଡ଼ି, ମଟରଗାଡ଼ି, ରିକ୍ସାଗାଡ଼ି ଥିଲା ।

ମଧୁସୂଦନ—ଷ୍ଟେସନରୁ କୁଆଡ଼େ ଗଲ ? ମାମୁଁଙ୍କ ବସାକୁ ?

ତ୍ରିଲୋଚନ —ହଁ, ମାମୁଁଙ୍କ ବସା ଯାଇ କଟକଚଣ୍ଡୀ ପାଖରେ— ଷ୍ଟେସନଠାରୁ ଦେଢ଼ କୋଶ ବାଟ । ବାଟଯାକ ତ ଦୋକାନ-ବଜାର କୋଠାବାଡ଼ି ଲାଗିଛି । ମୁଁ ଖାଲି ମୁହଁ ଏପଟ ସେପଟ କରୁଥାଏ । ଦେଖୁ ଦେଖୁ ଗାଡ଼ି ଯାଇ ମାମୁଁଙ୍କ ଘରେ ପହଞ୍ଚିଲା । ଗାଡ଼ିରୁ ଓହ୍ଲାଇ ଖିଆପିଆ କଲୁଁ । ତା'ପରେ ମାମୁଁଙ୍କ ସାଥିରେ ବୁଲିଲି ।

ମଧୁସୂଦନ— ଆଚ୍ଛା, କଟକ ସହର କେତେ ବଡ଼ ହେବ ?

ତ୍ରିଲୋଚନ—ଭାଇ, ବଜାରକୁ ବଜାର ବୁଲି ମୋ ଗୋଡ଼ ଘୋଳି ହୋଇଯାଏ । ଏଇଥିରୁ ତୁ ଜାଣୁଥିବୁ କେଡ଼େ ବଡ଼ ସହର ! ଚାନ୍ଦିନୀଚୌକବଜାର, ନୂଆ ସଡ଼କ, ବୃନ୍ଦାବନଚୌକ, ବକ୍ସିବଜାର, ଏପରି କେତେ ଯେ ବଜାର ! ମୋର ସବୁ ମନେ ନାହିଁ କି ସବୁ ମୁଁ ଦେଖି ନାହିଁ । ସୁନା ରୂପାର ଦୋକାନ କ'ଣ ଦେଖିବୁ ! ଲୁଗା ଦୋକାନ କ'ଣ ଦେଖିବୁ ! ଯାହା ଖୋଜିବୁ ତାହା ମିଳିବ ।

ମଧୁସୂଦନ – କ'ଣ ମାଗଣା ?

ତ୍ରିଲୋଚନ—ନାହିଁରେ ଭାଇ, କଟକ ସହରରେ ପଇସାଟି ହେଉଛି ଅସଲ । ସେଠି ପରା ଲୋକେ ଖଡ଼ା, ଚୋଇନାଡ଼ି ସବୁ ପଇସା ଦେଇ କିଣନ୍ତି । ତେବେ ମାଗଣା ଆଉ କେଉଁ ଜିନଷ ମିଳିବ ?

ମଧୁସୂଦନ—ହଉ, ଆଉ କ'ଣ କ'ଣ ଦେଖିଲୁ ?

ତ୍ରିଲୋଚନ – କାଠଯୋଡ଼ି'ର ପଥରବନ୍ଧ ଦେଖିଲି । କାଠଯୋଡ଼ି ନଈକୂଳରେ ପ୍ରାୟ ଦୁଇ କୋଶ ଧରି ପଥରବନ୍ଧ ପଡ଼ିଛି ।

କଟକର ବାବୁମାନେ ସଞ୍ଜ ହେଲେ ସେହି ବନ୍ଧ ଉପରେ ବୁଲବୁଲ କରି ପବନ ଖାଆନ୍ତି । ବସିବା ପାଇଁ ଜାଗାଏ ଜାଗାଏ ପଥରର ଚୌକି ତିଆରି ହୋଇଛି ।

ମଧୁସୂଦନ—ତୁ ସେ ଚୌକିରେ ବସି ପବନ ଖାଇଲୁ ? କଟକ ପବନ କପରି ଲାଗେ ରେ ? ଏଇ କଟକ ରସଗୋଲା ପରି ?

ନିଲୋଚନ—ଆରେ ବାବୁମାନେ ପବନ ଖାଆନ୍ତି ନା ! ଆମେ ତ ସାମାନ୍ୟ ଲୋକ, ଆମେ ପବନ ଖାଇବା କାହିଁକି ?

ମଧୁସୂଦନ—ଆଚ୍ଛା, ଆଉ କ'ଣ କ'ଣ ଦେଖିଲୁ ? ଏଥର କହିଯା' ।



ନିଲୋଚନ—ମହାନଦୀରେ ଆନିକଟ୍ ଦେଖିଲି । ପଥର ପାଚେରି ପକେଇ ମହାନଦୀ ପାଣିକି ଅଟକେଇ ଦିଆଯାଇଛି ।

ସେହି ପାଣି କେନାଲମାନଙ୍କରେ ଗୃହଆଡ଼କୁ ମାଡ଼ୁଛି । ଆନିକଟ୍ ପାଖରେ ଯୋବ୍ରା କାରଖାନା ଅଛି । ସେଠାରେ ଗୋଟିଏ ଖମ୍ବ ଅଛି ଯେ, ତାକୁ ଅନାଇଲେ ବେକ ଭାଙ୍ଗି ପଡ଼ିବ । ଆନିକଟ୍‌ଠାରୁ ଅଧ ମାଇଲ ଦୂରରେ ରେଭେନ୍‌ସା ମହାବିଦ୍ୟାଳୟ ବୋଲି ଓଡ଼ିଶାର ସବୁଠାରୁ ବଡ଼ ମହାବିଦ୍ୟାଳୟ ଅଛି । ସେହି ମହାବିଦ୍ୟାଳୟ ପ୍ରାୟ ଅଧ-କୋଶ ଜାଗା ମାଡ଼ିବସିଛି । ସେଥିରେ ଶହ ଶହ ପିଲା ପଢ଼ନ୍ତି । ମୋ ମାମୁଁ ସେଇଠି ପଢ଼ି ପାଶ୍ କରିଛନ୍ତି । ତା'ପରେ ଦେଖିଲି—ବାରବାଟୀ ପଡ଼ିଆ, ଆଉ ବାରବାଟୀ ଦୁର୍ଗ । ଦୁର୍ଗପାଖରେ ମସ୍ତବଡ଼ ଖାଇ । ତାହା ଏବେ ପୋତି ହୋଇଗଲାଣି । ଦୁର୍ଗ ବି ଭାଙ୍ଗିପଡ଼ୁଛି; ଖାଲି ପଥର ପାଚେରିଟି ଖଣ୍ଡେ ଅଛି । ମାମୁଁ କହିଲେ, ପୂର୍ବେ ଓଡ଼ିଶା ଦେଶର ରାଜାଙ୍କ ଉଆସ ସେଠାରେ ଥିଲା । ଉଆସ ଭିତରେ ରାଣୀମାନେ ଯେଉଁ ବାମ୍ଫୀରେ ଗାଧୋଉଥିଲେ, ଏବେ ସେ ବାମ୍ଫୀ ଅଛି; କିନ୍ତୁ ଖରାପ ହୋଇଗଲାଣି ।

ମଧୁସୂଦନ—ହଉ ଭାଇ, ଉଠ ହାତ ଧୋଇବା । ସୁବିଧା ହେଲେ ମୁଁ ଥରେ କଟକ ଯାଇ ଦେଖି ଆସିବି ।

## ପ୍ରଶ୍ନ

୧ । କଟକ ସହରର ଦୃଶ୍ୟ ନିଜ କଥାରେ ବର୍ଣ୍ଣନା କର ।

୨ । ଦୁର୍ଗ ଓ ଖାଇ ଦୁଇଟିର ଅର୍ଥ ବୁଝାଇଦିଅ ।

୩ । କଟକ ନଦୀକୂଳରେ ଥିବାରୁ ସେଠା ଲୋକଙ୍କର କି ଉପକାର ହେଉଅଛି ?

୪ । ସହର ଓ ମଫସଲ ମଧ୍ୟରେ ପ୍ରଭେଦ କଅଣ ?

# ଭିଖାରୀ

ଶ୍ୟାମସୁନ୍ଦର – ବାପା, ଦାଣ୍ଡରେ ଦଳେ ଭିଖାରୀ ଭିକ ପାଇଁ ପାଟି କରୁଛନ୍ତି । ମତେ କିଛି ପଇସା ଦିଅ, ମୁଁ ନେଇ ତାଙ୍କୁ ଦେଇଆସେଁ ।

ବାପା — ନାହିଁ ବାପା, ସେପରି କର ନାହିଁ । ଅନେକ ଲୋକ ପରିଶ୍ରମକୁ ଡରି ଭିକ ମାଗିବାକୁ ଏକ ବୃତ୍ତି କରି ଧରିଛନ୍ତି । ସେମାନଙ୍କୁ ଦୟା କରିବା ଅର୍ଥ—ଅଳସୁଆଙ୍କୁ ପୋଷିବା ।

ଶ୍ୟାମ — କିନ୍ତୁ ତାଙ୍କ ଭିତରୁ କେତେକ ନିଶ୍ଚୟ ପ୍ରକୃତରେ ଦୁଃଖୀ ଥିବେ । ତାଙ୍କୁ ଦୟା ନ କଲେ ସେମାନେ ଚଳିବେ କିପରି, ବାପା ?

ବାପା — ହଁ ମାନୁଛି, କେତେକ ଭିଖାରୀ ପ୍ରକୃତରେ ଦୁଃଖୀ । କିନ୍ତୁ ମୁଠେ ମୁଠେ ଚାଉଳ ବା ପଇସାଏ, ଦୁଇପଇସା ଦେଇ କିଅଣ ଆମେ ତାଙ୍କ ଦୁଃଖ ଘୁଞ୍ଚାଇ ପାରିବା ? ଯଦି ସେମାନଙ୍କ ମଧ୍ୟରୁ କେହି ପ୍ରକୃତରେ ରୁଗ୍ଣ, ତେବେ ତାହାର ଚିକିତ୍ସାର ବ୍ୟବସ୍ଥା କରିପାରି; ଯଦି ଜୀବିକାର୍ଜନର ଉପାୟ ନାହିଁ, ତେବେ ତା'ର ବା ବନ୍ଦୋବସ୍ତ କରିଦେଇ-ପାରି । ତା'ହେଲେ ସିନା ସେମାନଙ୍କର ପ୍ରକୃତ ଉପକାର ହେବ ! କିନ୍ତୁ ବିନା ବିଚାରରେ ସମସ୍ତଙ୍କୁ ମୁଠେ ମୁଠେ ଚାଉଳ ବା ଗୋଟିଏ ଗୋଟିଏ ପଇସା ଦେବା ଦ୍ୱାରା ଦେଶରେ କେବଳ ଭିଖାରୀର ଦଳ ବଢ଼ୁଛନ୍ତି ସିନା ! ସେମାନଙ୍କ ଅତ୍ୟାଚାରରେ ଗୃହସ୍ଥମାନେ ଅସ୍ଥିର ହୋଇଗଲେଣି ।

ଶ୍ୟାମ—କିନ୍ତୁ ବାପା, ଦୁର୍ଗତ ଲୋକର ଚିକିତ୍ସା ବା ବେକାର ଲୋକଙ୍କୁ ଚାକିରି ଯୋଗେଇବା ପାଇଁ ଆମର ସମସ୍ତ କାହିଁ ? ସୁବିଧା ବା କାହିଁ ?

ବାପା—ଦୁଃଖୀ ଲୋକଙ୍କ ଉପକାର ପାଇଁ ଟିକିଏ କଷ୍ଟ ସ୍ୱୀକାର କରିବାକୁ ହେବ । କଷ୍ଟ କରି ଗୋଟିଏ ଲୋକର ପ୍ରକୃତ



ଉପକାର କରିବା, ଏପରି ଅଳସୁଆ ଦଳଙ୍କୁ ହଜାର-ଥର ମୁଠି ଚାଉଳ ଦେବା-ଠାରୁ ଭଲ ନୁହେ କି ? ଆମ ଦେଶରେ ଜମିଚାଷ କରିବାକୁ, ଘର ତିଆରି କରିବାକୁ ବା ଅନ୍ୟ କାମ କରିବାକୁ ଯଥେଷ୍ଟ ଲୋକ ମିଳୁ ନାହାନ୍ତି; ଅଥଚ ଏଣେ ସୁସ୍ଥ ସବଳ ଲୋକେ ଭିଖ ମାଗି ବୁଲୁଛନ୍ତି । ସେମାନେ ଖଟି ଖାଇବେ ନାହିଁ କାହିଁକି ?

ଶ୍ୟାମ—ବାପା ! ଛୋଟା, କୋଢ଼ୀ, ଅନ୍ଧ ପ୍ରଭୃତି ଯେଉଁମାନେ କି କାମ କରିବାକୁ ଅକ୍ଷମ, ସେମାନଙ୍କୁ ଦୟା କରିବା କଅଣ ଅନ୍ୟାୟ ?

ବାପା—ନା, ସେମାନଙ୍କୁ ଦୟା କରିବା ସର୍ବଥା ଉଚିତ । କିନ୍ତୁ ଅନ୍ଧ, ଛୋଟା, ମୂକ, ବଧିର ମଧ୍ୟ କିଛି ନା କିଛି କାମ କରିପାରିବେ । ବିଲାତରେ ଏହିପରି ଲୋକଙ୍କ ମଧ୍ୟରୁ ଅନେକେ କାମ କରନ୍ତି, ଯାହା ଆମଦେଶରେ ସୁସ୍ଥ ସବଳ ଲୋକ କରିପାରିବେ ନାହିଁ । କିନ୍ତୁ ସେ ଦେଶର ଲୋକେ

ଭିକ ମାଗିବା, ପରର ଦୟା ଉପରେ ନିର୍ଭର କରିବା ବା ପର ପାଖରେ ହାତ ପତେଇବାକୁ ଅତ୍ୟନ୍ତ ଲଜ୍ଜାର ବିଷୟ ବୋଲି ମନେ କରନ୍ତି । ତେଣୁ ସ୍ତ୍ରୀ, କେହିମାନେ ମଧ୍ୟ କିଛି ନା କିଛି କାମ କରି ଓ ରୋଜଗାର କରି ବଞ୍ଚିବାକୁ ଚେଷ୍ଟା କରନ୍ତି । ଆମଦେଶରେ କିନ୍ତୁ ଭିକ ମାଗିବାରେ, ଆଉ ପର ଉପରେ ପଡ଼ି ବଞ୍ଚିବାରେ ଲୋକେ ଲଜ୍ଜା ଅନୁଭବ କରନ୍ତି ନାହିଁ; ବରଂ ଭିକ ବା ଚାନ୍ଦାରେ ବଞ୍ଚିବା ତାଙ୍କର ଦାବି ବୋଲି ଭାବନ୍ତି । ଏହା ଘୋର ଅନ୍ୟାୟ । ଏଥିରେ ଆମ୍ଭେମାନେ ସହାୟତା କରିବା ଅନୁଚିତ । ତେବେ ଯେଉଁ ଦରିଦ୍ର ଅନ୍ଧ, ଖଞ୍ଜମାନଙ୍କ ପାଇଁ ଆମେ ବା ସରକାର କୌଣସି ବ୍ୟବସ୍ଥା କରିପାରୁ ନାହୁଁ, ତାଙ୍କ ଭିତରୁ କାହାରି କାହାରିକୁ ଦୟା କରିବା ଆମର କର୍ତ୍ତବ୍ୟ । ତେବେ ଅନ୍ଧ, ଖଞ୍ଜ ମଧ୍ୟ ଧନୀ ଥାଇପାରନ୍ତି । ତାଙ୍କୁ ସାହାଯ୍ୟ ଦେବା ଅର୍ଥ ‘ତେଲିଆ ମୁଣ୍ଡରେ ତେଲ ଢାଳିବା’ । ପୁଣି ଶତ ଶତ ଅଜ୍ଞାତ ଲୋକଙ୍କୁ ମୁଠେ ମୁଠେ ଚାଉଳ ବା ପଇସାଏ ଦୁଇପଇସା କରି ଦାନ କରିବା ଅପେକ୍ଷା ଗୋଟିଏ ଯୋଡ଼ିଏ ଦୁଃସ୍ଥ ଲୋକର ଜୀବନବ୍ୟାପୀ ବ୍ୟବସ୍ଥା କରିଦେବାଟା ମୋ ମତରେ ବହୁ ଗୁଣରେ ପୁଣ୍ୟତର କର୍ମ । ପ୍ରତ୍ୟେକ ଧନୀ ଗୃହସ୍ଥ ଯଦି ଏହିପରି ଗୋଟିଏ ଦୁଇଟି କରି ପ୍ରକୃତ ଦରିଦ୍ର, ରୁଗ୍ଣ ବା ପଙ୍ଗୁ ଲୋକର ଭାର ବହନ କରନ୍ତେ, ତେବେ ଏ ଦେଶରେ ଭିକାରୀସବୁ ପଲ ପଲ ହୋଇ ବୁଲିବାର ଦେଖାଯାଆନ୍ତେ ନାହିଁ ।

ଶ୍ୟାମ—ବୁଝିଲି ବାପା, ଆମ ଶ୍ରେଣୀରେ ଗୋଟିଏ ଘରି ଗରିବ ପିଲା ପଢ଼ୁଛି । ତାର ଭଲ କୁର୍ତ୍ତାଟିଏ ହେଲେ ନାହିଁ । ମୋର

ଘର ଇଚ୍ଛା ହୁଏ, ତାକୁ ସାହାଯ୍ୟ କରିବାକୁ । ମତେ ତା’
କରିବାକୁ ଅନୁମତି ଦେଇପାରିବେ, ବାପା ?

ବାପା—ଏପରି ପିଲାକୁ ସାହାଯ୍ୟ କରିବାରେ ମୁଁ ଖୁସି ହେବି,
ବାପା । ତୁ କାଲି ତାକୁ ଆମ ଘରକୁ ଡାକି ଆଣିବୁ ।

## ପ୍ରଶ୍ନ

୧ । କପରି ଭିଖାରିଙ୍କୁ ତୁମେ ସାହାଯ୍ୟ କରିବା ଉଚିତ ?

୨ । “ତେଲିଆ ମୁଣ୍ଡରେ ତେଲ”—କହିଲେ ତୁମେ କ’ଣ ବୁଝ ?

୩ । ଅର୍ଥ କହ :— ବୃତ୍ତି, ରୁଗ୍ଣ, ଜୀବିକା, ସହାନୁଭୂତି,
ଖଞ୍ଜ, ପଙ୍ଗୁ ।

---

## ବିଦ୍ୟାଳୟର ଦୈନିକ ପାଠ

ବାପା—ଦେଖ ଶ୍ୟାମସୁନ୍ଦର, ତୋର ଏଥରର ତ୍ରୈମାସିକ
ପରୀକ୍ଷାର ଫଳ ଭଲ ହୋଇ ନାହିଁ । ତୁ ତଳ ଶ୍ରେଣୀରୁ
ପ୍ରଥମ ହୋଇ ଉପର ଶ୍ରେଣୀକୁ ଉଠିଥିଲୁ , କିନ୍ତୁ ଏଥର ତୁ
ଶ୍ରେଣୀରେ ଚତୁର୍ଥ ସ୍ଥାନକୁ ଖସିଯାଇଛୁ, ଅଙ୍କରେ ପାଶ୍ ମଧ
କରିନାହୁଁ ଏବଂ ଶ୍ରେଣୀଶିକ୍ଷକ ଲେଖିଛନ୍ତି ଯେ, ତୁ କ୍ଲାସର
ପ୍ରତିଦିନର ପଢ଼ା ନିୟମିତ କରି ଯାଉନାହୁଁ । ଏହା ଭଲ
କଥା କି ?

ଶ୍ୟାମ—ନାହିଁ, ବାପା ! ମୁଁ ଏଥିପାଇଁ ପ୍ରକୃତରେ ଦୁଃଖିତ ।
ମୁଁ ଚେଷ୍ଟା କରୁଛି । ମୁଁ ଭାବୁଛି, ଆଗାମୀ ପରୀକ୍ଷାରେ,
ଏଥର ଅପେକ୍ଷା ଭଲ କରିବି ।

ବାପା — କିନ୍ତୁ କପରି ପରିଶ୍ରମ କଲେ, କେଉଁ ଧାରାରେ ପଢ଼ିଲେ ପାଠସବୁ ପୂରାପୂରି ମନରେ ରହିବ, ଭୁଲ ହେବନାହିଁ, ତାହା ତୋର ଜାଣିରଖିବା ଉଚିତ । କେବଳ ଜାଣିରଖିଲେ ହେବ ନାହିଁ, ତାକୁ ପ୍ରତ୍ୟହ ଅଭ୍ୟାସ କରିବାକୁ ହେବ । ପ୍ରଥମ କଥା, ଶିକ୍ଷକ ମହାଶୟ ଯାହା ଯାହା ପଢ଼ା ଦେଇଛନ୍ତି, ତାହା ଅତ୍ୟନ୍ତ ଯତ୍ନର ସହିତ ପଢ଼ ଓ ଲେଖ । ସେତିକି କରିସାରି, ଆଗକୁ ମଧ୍ୟ କିଛି କିଛି ପଢ଼ିଯାଅ । ଧର, କାଲି ତୁମ ଶ୍ରେଣୀରେ ପଢ଼ିବାର ବିଷୟ ହେଉଛି ସାହିତ୍ୟ, ଭୂଗୋଳ ଓ ସ୍ୱାସ୍ଥ୍ୟରକ୍ଷା । ଆଜିଯାଏ ଶ୍ରେଣୀରେ ଯାହା ଯେଉଁ ପର୍ଯ୍ୟନ୍ତ ପଢ଼ା ହୋଇଯାଇଛି, ସେସବୁ ବିଷୟରେ କିଛି କିଛି ଆଗକୁ ପଢ଼ିଯାଅ । କେତେକ ନିଶ୍ଚୟ ବୁଝିବ ତ, କେତେକ ବୁଝି ପାରିବ ନାହିଁ । ଯେଉଁ ଯେଉଁ ଅଂଶ ବୁଝିପାରିବ ନାହିଁ, ତାକୁ ଚିହ୍ନ ଦେଇ ରଖ । ଶ୍ରେଣୀରେ ଶିକ୍ଷକ ପଢ଼ାଇଲାବେଳେ, ବରାବର ଏକାଗ୍ର ଚିତ୍ତରେ ସବୁ ଶୁଣିବ । ଏସବୁ ତମେ ଆଗରୁ ଥରେ ପଢ଼ି ନେଇଛ । ତେଣୁ ବୁଝିବା ସହଜ ହେବ । ଯାହା ବୁଝି ନ ପାରିବ, ସେ ବିଷୟରେ ଶିକ୍ଷକଙ୍କୁ ପ୍ରଶ୍ନ କର । ପ୍ରଶ୍ନ ପଚାରିବାରେ ଆଦୌ ଭୟ ବା ଲଜ୍ଜା କରିବ ନାହିଁ । ଯେ ପର୍ଯ୍ୟନ୍ତ ଯାହା ବୁଝି ନ ପାରୁଥିବ, ସନ୍ଦେହ ସବୁ ଦୂରହେବା ପର୍ଯ୍ୟନ୍ତ ଶିକ୍ଷକଙ୍କୁ ବରାବର ପ୍ରଶ୍ନ କରି ବୁଝି ନେବାକୁ ଚେଷ୍ଟା କରିବ । ଏପରି କଲେ ଶ୍ରେଣୀରେ ଯାହା ପଢ଼ାହୁଏ, ତାହା ପରିଷ୍କାର ବୁଝିହୁଏ । ଘରେ ଆଗରୁ ଥରେ ପଢ଼ି ନ ଥିଲେ, ଶିକ୍ଷକ ଯାହା କହିବେ, ତାହା ନୂଆ ନୂଆ ଜଣାପଡ଼ିବ, ଶୁଣିବାକୁ ମନ ବି ଲାଗିବ ନାହିଁ । ଫଳରେ ଅନେକ କଥା ଅବୁଝା ରହିଯିବ ।

ଶ୍ୟାମ—ମତେ ଏକଥା ଆଗରୁ କେହି କହି ନ ଥିଲେ, ବାପା । ଏଥର ମୁଁ ନିଶ୍ଚୟ ଆଗକୁ କିଛି କିଛି ପଢ଼ିପିବି । ଶିକ୍ଷକ ଯାହା ପୁରୁଣା ପାଠ ଉପରେ ପଢ଼ା ଦେଇଥିବେ, ତାହା ତ ନିଶ୍ଚୟ ଘରର ସଜାଡ଼ି କରିବ ।

ବାପା—ଆଉର ଗୋଟିଏ କଥା ମଧ୍ୟ ମନେ ରଖିବାକୁ ହେବ । ସ୍କୁଲରୁ ଫେରି କିଛି ଖାଇ ନେବୁ ଓ ନିଶ୍ଚୟ କିଛି ସମୟ ଖେଳିବୁ । ତା' ପରେ ଧୂଆଧୋଇ ହୋଇ ସନ୍ଧ୍ୟାରେ ପୁଣି ପଢ଼ା ଆରମ୍ଭ କରିବୁ । କାଲି ଶିକ୍ଷକ ଯାହା ପଢ଼େଇ ଦେଇଗଲେ, ତାହା ଥରେ ପୁନରାବୃତ୍ତି କରିନେବୁ । ଏହିପରି କରିନେଲେ, ଗୋଟିଏ ପାଠକୁ ତମେ ତିନି ଥର ପଢ଼ିଗଲ । ଥରେ ଘରେ ନିଜେ ନିଜେ ପଢ଼ିଥିଲ, ତା'ପରେ ଶିକ୍ଷକଙ୍କ ମୁହଁରୁ ସେହି ପାଠ କ୍ଲାସରେ ଶୁଣିଲ ଓ ତମର ଯାହା ସନ୍ଦେହ ଥିଲା, ତାହା ପଚାରି ବୁଝିନେଲ; ପୁଣି ଘରେ ଆସି ସେହି ପାଠକୁ ଆଉ ଥରେ ଦେଖିନେଲ । ଏହିପରି ତିନି ଥର ପଢ଼ିନେଲେ କୌଣସି ପାଠ ମନରୁ ପାଶୋରିପିବ ନାହିଁ । ଯାହା ଜାଣିବାର କଥା, ତାହା ଭଲରୂପେ ଜାଣିହେବ । ତେଣୁ ପରୀକ୍ଷା ବେଳକୁ ଧନ୍ଦ ହେବାକୁ ପଡ଼ିବ ନାହିଁ ।

ଶ୍ୟାମ—ବାପା, ମୁଁ ବୁଝିଛି ଯେ, ଏପରି ପଢ଼ିଲେ ପରୀକ୍ଷା ବେଳକୁ ଆକୁଳିଆ ହୋଇ ପଢ଼ିବା ଦରକାର ପଡ଼ିବ ନାହିଁ । ଆଗରୁ ଭଲ କରି ପଢ଼ି ନ ଥିଲେ, ପରୀକ୍ଷା ବେଳକୁ ସବୁ ନୂଆ ନୂଆ ନୂଆ ଲାଗିବ ଓ ଅନେକ କଥା ବୁଝିହେବ ନାହିଁ, ମନେ ରହିବ ନାହିଁ । କିନ୍ତୁ ବାପା, ଯେତେ ପଢ଼ିଥିଲେ ମଧ୍ୟ

ପରୀକ୍ଷା ଦେଲା ବେଳକୁ ସବୁ କଥା ମନେ ପଡ଼ିଯିବ ହୋଇଯାଏ ।

ବାପା—ଯଦି ପ୍ରତିଦିନର ପଢ଼ାଟି ନିୟମିତ ଭାବରେ କରୁଥିବ, ଯଦି ପାଠସବୁ ଯେପରି କହିଲି, ସେପରି ପ୍ରତ୍ୟହ ତିନି ଥର କରି ଦେଖି ନେଉଥିବ, ତେବେ ପରୀକ୍ଷା ଦେଲାବେଳେ ହଡ଼ବଡ଼ ହୋଇଯିବାର କୌଣସି କାରଣ ନାହିଁ । ତେବେ ପରୀକ୍ଷା ପାଇଁ ଆଉ ଗୋଟିଏ ବିଷୟରେ ବିଶେଷ ସାବଧାନ ହେବାକୁ ହେବ ।

ଶ୍ୟାମ – ସେ ବିଷୟଟି କଅଣ ବାପା ?

ବାପା—ସେଟି ହେଉଛି 'ସମୟ' । ତମେ ସାହିତ୍ୟରେ ୧୦ଟି ପ୍ରଶ୍ନ ପାଇଛ । ତାକୁ ଦୁଇଘଣ୍ଟା ଭିତରେ ଉତ୍ତର ଦେବାକୁ ହେବ । ପ୍ରଶ୍ନଗୁଡ଼ିକ ପଢ଼ି ସେସବୁର ଉତ୍ତର ମନେ ମନେ ଠିକ୍ କରିବାକୁ ଓ ଯାହା ଲେଖିଗଲ ତାକୁ ଥରେ ପଢ଼ି ସଂଶୋଧନ କରି ନେବାକୁ ସମୟ ଦରକାର । ତେଣୁ ମୋଟରେ ତମେ ପ୍ରତି ପ୍ରଶ୍ନକୁ ହୁଏତ ମୋଟେ ୯ ମିନିଟ୍ କରି ସମୟ ପାଇଲ । ଯଦି ଏହି ସମୟ ଉପରେ ଆଖି ନ ରଖ ଏବଂ କେତେକ ପ୍ରଶ୍ନର ଉତ୍ତର ଲେଖିବାରେ ତମେ ଅଯଥା ଦୀର୍ଘ ସମୟ ନିଅ, ତେବେ ଏହା ନିଶ୍ଚିତ ଯେ, ତମେ କେତେକ ପ୍ରଶ୍ନ ବାଧ୍ୟ ହୋଇ ଛାଡ଼ି ଆସିବ ବା ଭଲଭାବରେ ଉତ୍ତର ଦେଇ ପାରିବ ନାହିଁ । ବିଦ୍ୟାଳୟର ଦୈନନ୍ଦିନ ପଢ଼ାଟି କଲାବେଳେ ତମେ ଏହି ସମୟ ଉପରେ ଆଖି ରଖି ଅଭ୍ୟାସ କରୁଥିଲେ, ସେହି ଅଭ୍ୟାସ ପରୀକ୍ଷାରେ କାମ ଦେବ ।

ଶ୍ୟାମ—ଠିକ୍ କଥା, ବାପା । ମୁଁ ଗଲା ପରୀକ୍ଷାରେ କେତେ ଖଣ୍ଡି ଅଙ୍କ ଏଇଥି ପାଇଁ ଭୁଲ୍ କରି ଆସିଲି, ସାହିତ୍ୟ-ପତ୍ରରେ ପ୍ରବନ୍ଧଟି ମଧ୍ୟ ଲେଖିପାରିଲି ନାହିଁ ।

ବାପା—ମୁଁ ଯେପରି ଭାବରେ କହିଲି, ସେହିପରି ଭାବରେ ଲେଖାଲେଖି ଓ ପଢ଼ାପଢ଼ି କର । ଦେଖିବ, ତମେ କେବଳ ପରୀକ୍ଷାରେ ନୁହେଁ, ଜୀବନର ସବୁ କାମରେ କୃତକାର୍ଯ୍ୟ ହୋଇପାରିବ ।

## ପ୍ରଶ୍ନ

୧ । ନୈମାସିକ, ଏକାଗ୍ର, ପୁନରାବୃତ୍ତି, ସଂଶୋଧନ, ଦୈନନ୍ଦିନ—ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଠନ କର ।

୨ । ତୁମେ କିପରି ଭାବରେ ପଢ଼ାପଢ଼ି କଲେ ସହଜରେ କୃତକାର୍ଯ୍ୟ ହୋଇପାରିବ, ତାହା ଭଲଭାବରେ ବୁଝାଇ କହ ।

୩ । ଉପର ଲିଖିତ ପାଠରୁ ତୁମେ କ'ଣ ଶିକ୍ଷା ପାଇଲ ?

---

## ଜାତୀୟ ପତାକା

ତିରଙ୍ଗା ଜାତୀୟ ପତାକା
ଉଡ଼େ ଆମ ଉପର
ଅଶୋକ ଚକ୍ରରେ ମଣ୍ଡିତ
ଆହା କେଡ଼େ ସୁନ୍ଦର ।

ତିନି ରଙ୍ଗ ଲୋକେ ଦେଖାଏ-
ସତ୍ୟ, ନ୍ୟାୟ, ସମତା ;
ସେହି ପଥେ ଆମ ନେତାଏ
ନେବେ ଦେଶ ବ୍ୟବସ୍ଥା ।



ଧର୍ମବଳେ ବାପୁ କରିଲେ
ମୁକ୍ତ ଭାରତବର୍ଷ,
ଧର୍ମପଥେ ଚାଲି ଦର୍ବସ
ଲଭୁଅଛି ଉତ୍କର୍ଷ ।
ଆମ ଧର୍ମ କାରେ ନ ମାରି
କରେ ରକ୍ଷା ଦୁର୍ବଳେ
ଆମ ଚକ୍ର ଦିଏ ଅଭୟ,
ଖ୍ୟାତ ଜନେ ଭୂତଳେ ।

ସେଥିପାଇଁ ଆମ ପତାକା
ପାଏ ବିଶ୍ୱେ ସମ୍ମାନ,
ଆମ ଦେଶ କରେ ଜଗତେ
ଶାନ୍ତିରକ୍ଷକ କାମ ।
ଆଜଠାରୁ ମୁହିଁ ନିଜକୁ
ଏହିପରି ଗଢ଼ିବି,
ମୋ ଜାତି-କେତନ ସମ୍ମାନ
ଧନେ ମୁହିଁ ରଖିବି ।
ଏ ପତାକା ଟେକ ରଖିବା—
ପାଇଁ ଦେଲେ ଜୀବନ,
ଧନ୍ୟ ହେବେ ପିତା, ମାତା ମୋ
ଧନ୍ୟ ହେବ ମୋ ଜନ୍ମ ।

## ପ୍ରଶ୍ନ

୧ । ଆମ ଦେଶ ବିଶ୍ୱରେ କାହିଁକି ସମ୍ମାନ ପାଉଛି ?

୨ । ଆମ ଜାତୀୟ ପତାକାରେ କେତୋଟି ରଙ୍ଗ ଦେଖାଯାଏ ? ତାହା ଆମକୁ କି ଶିକ୍ଷା ଦେଉଛି ?

---

## ପିଲାମାନେ ମାଆକୁ ସାହାଯ୍ୟ କଲେ

ଶିକ୍ଷକ ଦେଖିଲେ ଯେ ରାଧାଗୋବିନ୍ଦ ସବୁବେଳେ ବିଳମ୍ବରେ ସ୍କୁଲକୁ ଆସୁଛି । ରାଧାଗୋବିନ୍ଦର ଉପରେ ଦୁଇଟି ଭାଇ ଓ ଗୋଟିଏ ଭଉଣୀ । ସମସ୍ତେ ସ୍କୁଲରେ ପଢ଼ନ୍ତି । ବଡ଼ ପିଲାଗୁଡ଼ିକ ବଡ଼ ସ୍କୁଲରେ ପଢ଼ନ୍ତି । ଗୁରୁ ବଡ଼ସ୍କୁଲର ଶିକ୍ଷକମାନଙ୍କଠାରୁ

ମଧ୍ୟ ବୁଝିଲେ ଯେ, ରାଧାଗୋବିନ୍ଦ ପରି ସେମାନେ ମଧ୍ୟ ସ୍କୁଲକୁ ପ୍ରାୟ ବିଳମ୍ବରେ ଆସନ୍ତି ; ସେମାନଙ୍କର ପୋଷାକପତ୍ରରେ ଠିକ୍ ନ ଥାଏ । ରାଧାଗୋବିନ୍ଦର ଶିକ୍ଷକ କାରଣ ଜାଣିବା ପାଇଁ ଦିନେ ରାଧାଗୋବିନ୍ଦର ଘରକୁ ଗଲେ । ରାଧାଗୋବିନ୍ଦ ପିଲାଟି ବୁଦ୍ଧିମାନ୍, ବ୍ୟବହାର ମଧ୍ୟ ଭଲ । ତେଣୁ ଶିକ୍ଷକ ତାକୁ ଭଲ ପାଆନ୍ତି ।

ଶିକ୍ଷକ ରାଧାଗୋବିନ୍ଦ ଘରକୁ ଯାଇ ତା'ର ବାପା ଓ ବୋଉଙ୍କ ସଙ୍ଗେ ଅନେକ ବେଳ ଯାଏଁ ଘରର ନାନା ବିଷୟରେ କଥାବାର୍ତ୍ତା ହେଲେ । ତାଙ୍କ କଥାବାର୍ତ୍ତାରୁ ସେ ଜାଣିଲେ ଯେ ରାଧାଗୋବିନ୍ଦର ଘରେ ଆଦୌ ସହଯୋଗ ନାହିଁ । ସେଥିପାଇଁ କୌଣସି କାମ ଠିକ୍ ସମୟରେ ହୋଇପାରୁ ନାହିଁ । ପିଲାମାନେ ଠିକ୍ ସମୟରେ ଖାଇବାକୁ ପାଆନ୍ତି ନାହିଁ; ତାଙ୍କ ପୋଷାକପତ୍ର ମଧ୍ୟ ଠିକ୍ ନ ଥାଏ ।

ଶିକ୍ଷକ ବୁଝିଲେ ଯେ ରାଧାଗୋବିନ୍ଦ ଓ ତାର ଭାଇ ଭଉଣୀ-ମାନେ ଘରକାମରେ ମାଆଙ୍କୁ ଆଦୌ ସାହାଯ୍ୟ କରନ୍ତି ନାହିଁ, କି ନିଜ କାମଗୁଡ଼ିକ ନିଜେ କରନ୍ତି ନାହିଁ । ସେମାନେ ସବୁବେଳେ ଅପେକ୍ଷା କରନ୍ତି —ସବୁ କାମ ଅନ୍ୟମାନେ କରିବେ, ତାଙ୍କୁ କିଛି ଯେପରି କରିବାକୁ ନ ପଡ଼େ । ଏହା ଫଳରେ ରାଧାଗୋବିନ୍ଦର ମାଆ ଘରର ସବୁ କାମ କରିବାକୁ ବାଧ୍ୟ ହୁଅନ୍ତି । ସେ ଏକା ଏକା ଏତେ କାମ କରିପାରିବେ କିପରି ? ତେଣୁ କୌଣସି କାମ ଠିକ୍ ସମୟରେ ଠିକ୍ ଭାବରେ ହୋଇପାରେ ନାହିଁ ।

ଏସବୁ ଦେଖି, ଦିନେ ଶିକ୍ଷକ ପୁଣି ରାଧାଗୋବିନ୍ଦ ଘରକୁ ଗଲେ ଏବଂ ତାକୁ ଓ ତା'ର ଭାଇ ଭଉଣୀମାନଙ୍କୁ ଡାକି ପରସ୍ପରକୁ

କପର ସାହାଯ୍ୟ କରାଯିବ, ତାହା ବତାଇ ଦେଲେ । ସେ କହିଲେ ଯେ, ପାଞ୍ଚ ସାତଟା ବାଡ଼ିକୁ ଜଣକ କାନ୍ଧରେ ଲଦିଦେଲେ, ସେ ଲୋକଟିକୁ ଗୋଟିଏ ଭାରି ବୋଝ ହୋଇ ପଡ଼ିବ । କିନ୍ତୁ ପାଞ୍ଚ ସାତ ଜଣ ଯଦି ପ୍ରତ୍ୟେକେ ଗୋଟିଏ ଗୋଟିଏ ବାଡ଼ି ଧରି ନିଅନ୍ତି, ତେବେ କାହାକୁ କିଛି କଷ୍ଟ ବୋଲି ମନେ ହେବ ନାହିଁ ।

ସେହିପରି ଘର ସଫା କରିବା, ବାସନ ମଜାମଜି କରିବା, ବଗିଚା କାମ କରିବା, ବଜାର ସଉଦା କରିବା ପ୍ରଭୃତି ଘରର ଯାବତୀୟ ଛୋଟ ଛୋଟ କାର୍ଯ୍ୟ ଯଦି ଘରର ଛୋଟ ବଡ଼ ସମସ୍ତେ ଭାଗ କରି ନିଅନ୍ତି, ତେବେ ସେହି ଘରଟି ସୁବ୍ୟବସ୍ଥିତରେ ଚାଲିବ । ପ୍ରତ୍ୟେକ କାମ ଠିକ୍ ସମୟରେ ଓ ଠିକ୍ ଭାବରେ ହେବ ଏବଂ କାହାକୁ କାମ କଲାପରି ଜଣାପଡ଼ିବ ନାହିଁ ।



ସେହି ଦିନଠାରୁ ରାଧାଗୋବିନ୍ଦଙ୍କ ଘରେ ପରିବର୍ତ୍ତନ ଦେଖାଗଲା । ତା'ର ଭାଇ ଓ ଭଉଣୀମାନେ ଘରର ଗୋଟିଏ

ଗୋଟିଏ କାମ ନିଜ ଉପରକୁ ନେଇଗଲେ । ଆଉ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ସାହାଯ୍ୟ କରିବାକୁ ଶିଖିଲେ । ଜଣେ ବାସନ ଧୋଇ ବସିଲେ ଆଉ ଜଣେ ତାଙ୍କୁ ପାଣି ଯୋଗେଇ ଦେଲା, ଜଣେ କୋଠରୀଗୁଡ଼ିକ ଏଫେଇ ଆସିଲେ ଆଉ ଜଣେ ଯାଇ ବହିପତ୍ର ଓ ମେଜ ଚୌକିରୁ ଧୂଳି ଝାଡ଼ି ଦେଲା । ଯାହା ଆଖିରେ ପଡ଼ିଲା, ସେ ଏଣେତେଣେ ପଡ଼ିଥିବା ବହିପତ୍ର ଅନ୍ୟ ଯାହାର ହେଉ ପଛେ, ସଜାଡ଼ି ରଖିଦେଲା । ଭଉଣୀମାନେ ଭାଇମାନଙ୍କର ପେଣ୍ଟ, କୁର୍ତ୍ତା ଆଦି ପ୍ରତିଦିନ ଯାହା ଦରକାର, ତାଙ୍କୁ ସିଲାଇ ଓ ମରାମତି କରି ରଖିଦେଲେ । ସମସ୍ତେ ନିଜ ନିଜ ଯୋତା ସଫା କଲେ ଓ ଲୁଗାପଟା ସାବୁନ୍‌ରେ ଧୋଇ, ଇସ୍ତ୍ରୀ କରିବାକୁ ଶିଖିଲେ ।

ଏପରି କରିବାରେ ରାଧାଗୋବିନ୍ଦର ମାଆଙ୍କୁ ଯଥେଷ୍ଟ ଅବସର ମିଳିଲା । ସେ ବର୍ତ୍ତମାନ ପିଲଙ୍କୁ ରୋଷେଇ କରି ଓ ଖାଇବାକୁ ଦେଇ ସ୍କୁଲ୍‌କୁ ଠିକ୍ ସମୟରେ ପଠେଇ ପାରିଲେ । ରାଧାଗୋବିନ୍ଦର ଘରଟି ସୁସଜ୍ଜିତ ହେବାର ଦେଖାଗଲା । ରାଧାଗୋବିନ୍ଦ ତାର ଭାଇ ଓ ଭଉଣୀ ଏବେ ସବୁବେଳେ ପୋଷାକପତ୍ରରେ ସାଫ ପରିଷ୍କାର ପରିଚ୍ଛନ୍ନ ଥିବାର ଦେଖାଗଲେ ।

ରାଧାଗୋବିନ୍ଦର ବାପା ଦିନେ ତା'ର ଶିକ୍ଷକଙ୍କୁ ଡକାଇ ତାଙ୍କୁ ବହୁତ ଧନ୍ୟବାଦ ଦେଲେ । ତାଙ୍କଯୋଗୁଁ ପିଲାମାନେ କାମରେ ସହଯୋଗ ଶିଖି ତାଙ୍କ ସଂସାରଟିକୁ ନୂଆ କରିଦେଇ ଥିବାର ସେ ଅନ୍ୟ ଲୋକଙ୍କୁ କହି ଆନନ୍ଦ ପ୍ରକାଶ କଲେ । ଆମ୍ଭେମାନେ ଯଦି ସହଯୋଗ ରଖି ଘରର ପ୍ରତ୍ୟେକ କାମ କରିପାରିବା, ତେବେ ଆମ ଘର ମଧ୍ୟ ସୁରୁଖୁରୁରେ ଚାଲିବ ଓ ଆମ୍ଭେମାନେ ମଧ୍ୟ ସୁଖ ଶାନ୍ତିରେ ରହି ପାରିବା ।

## ପ୍ରଶ୍ନ

୧ । ଶିକ୍ଷକଙ୍କ ଉପଦେଶଦ୍ୱାରା ପିଲାମାନେ କପରି ଭାବରେ ସେମାନଙ୍କ ମା'ଙ୍କୁ ସାହାଯ୍ୟ କଲେ ?

୨ । ପରସ୍ପର ପରସ୍ପରକୁ ସାହାଯ୍ୟ ନ କଲେ ପରିବାରର କି କ୍ଷତି ହୁଏ ?

୩ । ସରଳ ଭାଷାରେ ବୁଝାଅ :—"ତାଙ୍କ ଯୋଗୁଁ ପିଲାମାନେ··· ସଂସାରଟିକ ନୂଆ କରିଦେଲେ ।"

---

## ପତିତପାବନ ଗାନ୍ଧି

ବମ୍ବେ ପ୍ରଦେଶର ଅହମଦାବାଦ ନଗରରେ ବାପୁଜୀ ତାଙ୍କର ପ୍ରଥମ ଆଶ୍ରମ ପ୍ରତିଷ୍ଠା କରିଥିଲେ । ସାବରମତୀ ନାମକ ନଦୀକୂଳରେ ଥିବାରୁ ତାହାର ନାମ ଥିଲା ସାବରମତୀ ଆଶ୍ରମ । ବାପୁଜୀ ଯେଉଁଠି ଆଶ୍ରମ କରୁଥିଲେ, ସେଠି ନିୟମ ଥିଲା ଯେ, ସମସ୍ତେ ଗୋଟିଏ ପରିବାର ପରି ଚଳିବେ, ସମସ୍ତେ ନିଜ କାମ ନିଜ ହାତରେ କରିବେ ଏବଂ କାହାରି ନିଜର ବୋଲି କୌଣସି ଧନ-ସମ୍ପତ୍ତି ରଖିବେ ନାହିଁ । ଏଠାରେ ସମସ୍ତଙ୍କ ପାଇଁ ଏକା ଖାଦ୍ୟ ରନ୍ଧା ଯିବ ଓ ସମସ୍ତେ ଏକତ୍ର ଭୋଜନ କରିବେ ।

ସାବରମତୀ ଆଶ୍ରମ ପ୍ରତିଷ୍ଠା ହେବାର କିଛି କାଳ ପରେ ବାପୁଜୀଙ୍କ ବନ୍ଧୁ ଠକ୍କର ବାପା ତାଙ୍କୁ ଜଣାଇଲେ ଯେ ଦୁଦାଭାଇ ନାମକ ଜଣେ ଅଛୁଆଁ ଜାତିର ଲୋକ ତା'ର ସ୍ତ୍ରୀ ଧନୀ ବାଈ ଓ କନ୍ୟା ଲକ୍ଷ୍ମୀ ସହିତ ବାପୁଜୀଙ୍କ ଆଶ୍ରମରେ ରହିବାକୁ ଇଚ୍ଛା

କରୁଥିଲେ । ବାପୁଜୀ ଦ୍ୱିଧା ନ କରି ତାହାଁରେ ସମ୍ମତି ଦେଲେ । ସେତେବେଳେ ଏହା ଏକ ନୂଆ ଘଟଣା । ବାପୁଜୀଙ୍କ ଆଶ୍ରମରେ ସେ ପର୍ଯ୍ୟନ୍ତ କେବଳ ଉଚ୍ଚବର୍ଣ୍ଣର ଲୋକ ବସବାସ କରୁଥିଲେ ।



ସେମାନଙ୍କର ଏକାଠି ଖାଇବା ପିଇବାରେ କୌଣସି ଆପତ୍ତି ନ ଥିଲା । କିନ୍ତୁ ଅଛୁଆଁ ଲୋକ ଆସି ଆଶ୍ରମରେ ରହିବେ, ସମସ୍ତଙ୍କ ସାଥିରେ ଏକାଠି ଖାଇବେ ପିଇବେ, ଏଥିରେ ଅଧିକାଂଶ ଆଶ୍ରମ-ବାସୀ ଏବଂ ମାତା କସ୍ତୁରବା ମଧ୍ୟ ଆପତ୍ତି କଲେ ।

କିନ୍ତୁ ବାପୁଜୀ କାହାରି ଆପତ୍ତି ଶୁଣିଲେ ନାହିଁ । ଦୁଦାଭାଇ ଓ ତାଙ୍କ ପରିବାର ଆସି ଆଶ୍ରମରେ ରହିଲେ । ବାପୁଜୀ ସେମାନଙ୍କୁ ନିଜର ପ୍ରିୟ ଲୋକ ରୂପେ ଗ୍ରହଣ କଲେ ।

ଏହି କଥା ଚାରିଆଡ଼େ ପ୍ରଚାର ହେବାରୁ ବମ୍ବେ, ଅହମଦାବାଦ ପ୍ରଭୃତି ସହରର ଯେଉଁ ଧନୀଲୋକେ ବାପୁଜୀଙ୍କ

ଆଶ୍ରମକୁ ସାହାଯ୍ୟ ଦେଉଥିଲେ, ତାହା ବନ୍ଦ କରିଦେଲେ । ଏ କଥା ବାପୁଜୀଙ୍କୁ ଜଣାଇବାରୁ ସେ ନିଶ୍ଚିନ୍ତ ଓ ନିଶ୍ଚିନ୍ତଭାବରେ ଉତ୍ତର ଦେଲେ ଯେ ସେ ଅଛୁଆଁମାନଙ୍କ ଭିତରେ ଯାଇ ଜୀବନ କଟାଇବାକୁ ପ୍ରସ୍ତୁତ ।

ମାସକ ପରେ ଆଶ୍ରମର ହିସାବରକ୍ଷକ ଜଣାଇଲେ ଯେ, ଆଶ୍ରମର ଖର୍ଚ୍ଚ ପାଇଁ ଆଉ ଦିନକର ପଇସା ମାତ୍ର ହାତରେ ଅଛି । କୌଣସି ଆଡ଼ୁ ଆଉ ଟଙ୍କା ପାଇବାର ଆଶା ନାହିଁ । ବାପୁଜୀ ବିଚଳିତ ହେଲେ ନାହିଁ । ତାଙ୍କର ଗଭୀର ଈଶ୍ୱର ବିଶ୍ୱାସ ଥିଲା । ସେ ଭାବୁଥିଲେ ଯେ, ସେ ଈଶ୍ୱରଙ୍କ ଆଦେଶ ପାଳନ କରୁଅଛନ୍ତି; ତେଣୁ ସେହି ପରମପିତା ତାହାଙ୍କୁ ସାହାଯ୍ୟ କରିବେ ।

ସତକୁ ସତ ଆଶ୍ଚର୍ଯ୍ୟଜନକଭାବରେ ସାହାଯ୍ୟ ଆସି ପହଞ୍ଚିଲା । ଆଶ୍ରମର ବାହାରେ ଫାଟକ ପାଖକୁ ତହିଁ ଆରଦିନ କୌଣସି ଧନୀବ୍ୟକ୍ତି ନିଜ ମଟର ଗାଡ଼ିରେ ଆସି ବାପୁଜୀଙ୍କୁ ଦର୍ଶନ କରିବାର ଇଚ୍ଛା ପ୍ରକାଶ କଲେ । ବାପୁଜୀ ତାଙ୍କୁ ଫାଟକ ପାଖରେ ଦେଖାଦେବା ମାତ୍ରେ ସେ ତାଙ୍କ ହାତରେ ତେରହଜାର ଟଙ୍କାର ନୋଟ ଗୁଞ୍ଜିଦେଇ ଆଉ କିଛି ନ କହି ଚାଲିଗଲେ ।

କ୍ରମେ ଆଶ୍ରମବାସୀ ଓ କସ୍ତୁରବାଙ୍କର ମତ ପରିବର୍ତ୍ତନ ହେଲା । ଜୁଡାଭାଇ, ଧନୀ ବାଈ ଓ ଲକ୍ଷ୍ମୀ ଅନ୍ୟ ଉଚ୍ଚବର୍ଣ୍ଣର ହିନ୍ଦୁମାନଙ୍କ ପରି ଆଶ୍ରମରେ ସମଭାବରେ ଚଳିଲେ । ସମସ୍ତଙ୍କ ମନରୁ ଛୁଆଁଛୁଇଁ ଭାବ ଏକାବେଳକେ ଛଡ଼ାଇଦେବା ପାଇଁ ବାପୁଜୀ ଶେଷରେ ଲକ୍ଷ୍ମୀଙ୍କୁ ନିଜର ପୋଷ୍ୟା କନ୍ୟା ରୂପେ ଗ୍ରହଣ କଲେ ।

ବାପୁଜୀ ଏହିପରି ଭାବରେ ନିଜର ଦୃଷ୍ଟାନ୍ତଦ୍ୱାରା ଓ ନିଜେ ଦୁଃଖ ସହ୍ୟକରି ଆମଦେଶରୁ ଅଛୁଆଁ ପାପକୁ ତଡ଼ି ଦେଇ ପାରିଥିଲେ ।

## ପ୍ରଶ୍ନ

୧ । ସାବରମତୀ ଆଶ୍ରମ ପ୍ରଥମେ କିଏ ପ୍ରତିଷ୍ଠା କରିଥିଲେ ?

୨ । ସାବରମତୀ ଆଶ୍ରମର ଲୋକେ କି କି ନିୟମ ପାଳନ କରୁଥିଲେ ?

୩ । ଦୂଦାଭାଇଙ୍କ ସ୍ତ୍ରୀ ଓ କନ୍ୟାଙ୍କୁ ଉକ୍ତ ଆଶ୍ରମରେ ବାପୁଜୀ କାହିଁକି ସ୍ଥାନ ଦେଇଥିଲେ ?

୪ । ଶୂନ୍ୟସ୍ଥାନ ପୂରଣ କର :—

ବାପୁଜୀ ଏହିପରି ଭାବରେ — ଦ୍ୱାରା ଓ ନିଜେ ଦୁଃଖ ସହ୍ୟ କରି — ଅଛୁଆଁ ପାପକୁ — ।

---